# ଶ୍ରୀଶ୍ରୀ ଦଧିବାମନ



ଶ୍ରୀଶ୍ରୀ ଦଧିବାମନଜୀଉ ମନ୍ଦିର

ଲେଖକ — ଶ୍ରୀ ମଦନମୋହନ ରଥ

# ଶ୍ରୀଶ୍ରୀଦଧିବାମନ

# SHRI SHRI DADHIVAMANA



ଲେଖକ :

**ଶ୍ରୀ ମଦନମୋହନ ରଥ**

କୋଇଲୋ, ଅସୁରେଶ୍ବର, କଟକ

ପ୍ରକାଶିକା :
ଶ୍ରୀମତୀ ସରୋଜିନୀ ରଥ
କ୍ୱାର୍ଟର ନଂ ୨ ଆର୍ ବି (ଫ୍ଲାଟ୍)
(୬୧/୫)
ୟୁନିଟ୍-୯
ଭୁବନେଶ୍ୱର-୭



ପ୍ରଥମ ସଂସ୍କରଣ : ୧୯୯୨
ବାହୁଡ଼ା ଦଶମୀ

ମୁଦ୍ରଣ :
ନବଜୀବନ ପ୍ରେସ,
ଚାନ୍ଦନୀଚୌକ, କଟକ-୨

ମୂଲ୍ୟ : ଟ. ୧୫.୦୦

ପ୍ରାପ୍ତିସ୍ଥାନ :
**ଶ୍ରୀ ଗୋପିନାଥ ରଥ**
ମ୍ୟାନେଜିଂ ଟ୍ରଷ୍ଟୀ,
ଶ୍ରୀଶ୍ରୀଦଧିବାମନଜୀଉ ମନ୍ଦିର
କାର୍ଯ୍ୟାଳୟ,
କୋଇଲୋ, ଅସୁରେଶ୍ୱର
କଟକ-୭୫୪୨୦୯

**SHRI SHRI DADHIVAMANA**

Written by :
Sri Madanmohan Rath

Published by :
Smt. Sarojini Rath
Qrs. No. 2RB (Flats) 61/5
Unit IX
Bhubaneswar-7

First Edition : 1992

Printed at :
The Nabajivan Press,
Chandnichauk, Cuttack-2

Price : Rs 15.00

Distributor :
**Shri Gopinath Rath**
Managing Trustee
Shri Shri Dadhivamanjew
Temple Office,
Koilo, Asureswar,
Cuttack-754209

# ପଦେକଥା

ପ୍ରକାଶୋନ୍ମୁଖ 'ଶ୍ରୀ ଶ୍ରୀ ଦଧିବାମନ' ପୁସ୍ତକର ପାଣ୍ଡୁଲିପିଟିକୁ ବାରମ୍ବାର ପଢ଼ିଛି । ତଥାପି ପଢ଼ିବାର ଇଚ୍ଛା ଅବଦମିତ ହେଲା ନାହିଁ । ପ୍ରଭୁଙ୍କ ନିକଟରେ ଯିଏ ଯାହା ନିଷ୍ଠାର ସହିତ ଚାହିଁଛି ସେ ତାହା ସବୁ ପାଇଛି । ମୋ ଭଳି ଅକିଞ୍ଚନ ତାଙ୍କର କରୁଣାରୁ ଏ ମର ସଂସାରରେ ବଞ୍ଚି ରହିପାରିଛି । ଅଙ୍ଗେ ନିଭାଇଛି ସବୁ କଥା । କେତେ ବଡ଼ ବଡ଼ ବିପତ୍ତିରୁ ସେ ତ୍ରାଣ କରିଛନ୍ତି । ପଙ୍ଗୁ ହୋଇ ପର୍ବତ ଲଙ୍ଘନ ସମ୍ଭବ ହୋଇଛି ।

ଶ୍ରୀ ଶ୍ରୀ ଦଧିବାମନଜୀଉଙ୍କ ପ୍ରତି ଅହେତୁକ ନିଃସ୍ୱାର୍ଥପର ଭକ୍ତି ସହ ସମର୍ପିତପ୍ରାଣ ଶ୍ରୀଯୁକ୍ତ ମଦନ ମୋହନ ରଥ ତାଙ୍କଦ୍ୱାରା ଆଦିଷ୍ଟ ହୋଇ ଲେଖନୀ ଚାଳନା କରି ସୃଷ୍ଟି କରିଛନ୍ତି 'ଶ୍ରୀ ଶ୍ରୀ ଦଧିବାମନ' ଗୀତିକାବ୍ୟ । ଅସୁରେଶ୍ୱରର ପ୍ରତିଷ୍ଠା, ପ୍ରଭୁଙ୍କ ବିଗ୍ରହ ପ୍ରାପ୍ତିର ଆଦ୍ୟ ଇତିବୃତ୍ତଠାରୁ ଆରମ୍ଭ କରି ବିଭିନ୍ନ ଜମିଦାରଙ୍କ ସମୟ, ଟ୍ରଷ୍ଟୀମାନଙ୍କର କଥା ଓ ବର୍ତ୍ତମାନର ଆଶା ତଥା ବିଶ୍ୱାସକୁ ସ୍ଥାନ ଦେଇଛନ୍ତି ଏ ପୁସ୍ତକରେ । ଅତୀତ ଓ ବର୍ତ୍ତମାନର ସ୍ମୃତି ଚାରଣ କରାଯାଇଛି ଅତି ନିଖୁଣ ଭାବରେ । ସରଳ ଛନ୍ଦୋମୟ ପଦଗୁଡ଼ିକ ଯେ କୌଣସି ସ୍ତରର ପାଠକ ପାଠିକାମାନଙ୍କର ସହଜବୋଧ ହୋଇ ପାରିବ । ଏଣୁ ବିଶେଷ କରି ଭବିଷ୍ୟତ ବଂଶଧର ବର୍ତ୍ତମାନର ବିଦ୍ୟାର୍ଥୀମାନଙ୍କ ପକ୍ଷେ ଏହା ଅତ୍ୟନ୍ତ ଉପଯୋଗୀ ହୋଇ ପାରିଛି ।

"ସୁରୂପା ଅଂଶୁପା ଲୋକେ ଅଗୋଚର, ପୂଜାପ୍ରଦ ହେଲା ଗୋଷ୍ପଦ ପୁଷ୍କର" ନ୍ୟାୟରେ ଓଡ଼ିଶାର ଭୌଗୋଳିକ, ଐତିହାସିକ, ସାଂସ୍କୃତିକ ଓ ସାମାଜିକ ସ୍ତରରେ ସ୍ୱତନ୍ତ୍ର ଆସନର ଅଧିକାରୀ ଅସୁରେଶ୍ୱରର ସୁପ୍ରତିଷ୍ଠିତ 'ଶ୍ରୀ ଶ୍ରୀ ଦଧିବାମନ ଜୀଉ'ଙ୍କ ପୁରାତନ ମନ୍ଦିରର ମହିମା ଓ ପ୍ରସିଦ୍ଧିର ପ୍ରଚୁର ପ୍ରସାର ଅଭାବରୁ ଏହା ପରିତ୍ୟକ୍ତ ହୋଇ ପଡ଼ିରହିଛି ।

ବହୁ ବର୍ଷ ଧରି ମହାପ୍ରଭୁଙ୍କ ବିଜେ ପ୍ରତିମା ଶ୍ରୀ ମଦନମୋହନ ଓ ମା ଲକ୍ଷ୍ମୀଙ୍କ ବିଗ୍ରହ ଅପହୃତ ହୋଇଯାଇଥିଲା । ନିକଟ ଅତୀତରେ ଗଜପତି ଶ୍ରୀ ଶ୍ରୀ ଦିବ୍ୟସିଂହ ଦେବ ମହାରାଜଙ୍କ ଦ୍ୱାରା ଉଭୟ ଦେବ-ଦେବୀ-ପ୍ରତିମା ପ୍ରତିଷ୍ଠିତ ହେବା ପରେ ପରେ ରଥବିପ୍ରବଂଶୋଦ୍ଭବ "ଶ୍ରୀଯୁକ୍ତ ମଦନମୋହନ" ରଚନା କରିଛନ୍ତି ପ୍ରଭୁଙ୍କ ଉଦ୍ଦେଶ୍ୟରେ କାବ୍ୟଟିଏ । କି ବିଚିତ୍ର ସଂଯୋଜନା ପ୍ରଭୁଙ୍କର ! ଆନନ୍ଦରେ ମୁଁ ଓ ମୋର ଟ୍ରଷ୍ଟବୋର୍ଡ଼ର ସହଯୋଗୀ ଅଧୀର ହୋଇ ପଡ଼ୁଛୁ । ଅନ୍ତରର କୃତଜ୍ଞତା ଜଣାଉଛୁ ଏହି କାବ୍ୟର ଜନ୍ମଦାତାଙ୍କ ନିକଟରେ । ପ୍ରଭୁ ତାଙ୍କର କଥାର ପ୍ରଚାର ଦାୟିତ୍ୱ ନିଜେ ଗ୍ରହଣ କରନ୍ତୁ । ଭକ୍ତମାନଙ୍କର ଆଗମନରେ ପୁଣି ମୁଖରିତ ହେଉ ପ୍ରଭୁଙ୍କ ରଥଦାଣ୍ଡ ଓ ମନ୍ଦିର । କାବ୍ୟ ମାଧ୍ୟମରେ ଲେଖକଙ୍କ ଅନାବିଳ ଭକ୍ତି ଆହୁରି ଶତଗୁଣିତ ହେଉ । ସବୁ ଶ୍ରମ ତାଙ୍କର ସାର୍ଥକ ହେବ ଯେତେବେଳେ ସବୁ ଶ୍ରେଣୀର ପାଠକ-ପାଠିକା ଏହାକୁ ପାଠ କରି ଅନ୍ତତଃ ଥରକ ପାଇଁ ପ୍ରଭୁଙ୍କ ପାଦପଦ୍ମରେ ନିଜକୁ ଲୋଟାଇ ଦେବେ । ସୁପ୍ତ ହୋଇଯାଇଥିବା ପରମ୍ପରା ପୁଣି ଜାଗ୍ରତ ହୋଇ ଉଠିବ । ପୁଣି ଭକ୍ତମାନଙ୍କର ସମବେତ କଣ୍ଠରେ ନିନାଦିତ ହୋଇ ଉଠିବ :

"ଦେଖିଥିଲେ ଦେଖିଥାଅ ନୟନ ପୂରାଇ, ଏମନ୍ତ ଲାବଣ୍ୟ ଆଉ ଦେଖିବାର ନାହିଁ ।" ପ୍ରଭୁଙ୍କ ପାଦତଳେ ପ୍ରଣାମ ଜଣାଇ ପୁଣି ଥରେ ଲେଖକଙ୍କ ନିକଟରେ ହାର୍ଦ୍ଦିକ କୃତଜ୍ଞତା ଜଣାଉଛି ।

ଜୟ ଜଗନ୍ନାଥ ।

କୋଇଲେ, ଅସୁରେଶ୍ୱର
କଟକ
ତା ୨୫-୫-୯୨ ରିଖ

**ଶ୍ରୀ ଗୋପୀନାଥ ରଥ**
ମ୍ୟାନେଜିଂ ଟ୍ରଷ୍ଟୀ
ଶ୍ରୀ ଶ୍ରୀ ଦଧିବାମନଜୀଉ ଟ୍ରଷ୍ଟବୋର୍ଡ଼

# ଅଭିମତ

ଓଡ଼ିଶାରେ ଦଧିବାମନ ଉପାସନାର ପରମ୍ପରା ବହୁ ପ୍ରାଚୀନ କାଳରୁ ପ୍ରଚଳିତ ଥିବାର ସୂଚନା ମିଳେ । ପ୍ରାୟ ଖ୍ରୀଷ୍ଟୀୟ ଦ୍ୱିତୀୟ-ତୃତୀୟ ଶତକରେ ଚରମ୍ପାର (ଭଦ୍ରକ) ରାଜା ଥିଲେ ଦଧିବାମନ । ସେ ଜୈନଧର୍ମାବଲମ୍ବୀ ଓ ଦଧିବାମନଙ୍କ ଉପାସକ ଥିଲେ । ଜୈନରାଜା ଦଧିବାମନଙ୍କ ଉପାସ୍ୟ ଦେବତାଙ୍କ ଆକାର ପ୍ରକାର କଣ ଥିଲା, ତାହା ନିର୍ଦ୍ଦିଷ୍ଟ ରୂପେ ଏବେ କହିବା ସମ୍ଭବ ନୁହେଁ । କେବଳ ଜୈନଧର୍ମ ନୁହେଁ, ବୌଦ୍ଧଧର୍ମ ସହ ମଧ୍ୟ ଦଧିବାମନ ଉପାସନାର ସମ୍ପର୍କ ସ୍ଥାପନ କରାଯାଇପାରେ । ଏ ବିଷୟରେ ଅଧିକ ଗବେଷଣା ଆବଶ୍ୟକ ।

ଅଭିଧାନ ଅନୁସାରେ ଶିବ ବାମନ ନାମରେ ଅଭିହିତ । ଶୈବ ମତବାଦର ବିଭିନ୍ନ ଦେବଦେବୀଙ୍କ ସହିତ ଅଜୈକପାଦ ଭୈରବ ଉପାସନା ମଧ୍ୟ ଓଡ଼ିଶାରେ ଲୋକପ୍ରିୟତା ଅର୍ଜନ କରିଥିଲା । ଏହାର ପ୍ରାଚୀନ ପ୍ରତ୍ନତାତ୍ତ୍ୱିକ ନିଦର୍ଶନ ଆଜି ବି ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ପରିଦୃଷ୍ଟ ହୁଏ । ଇତିହାସକାର, ମୂର୍ତ୍ତିତତ୍ତ୍ୱବିତ୍ ଓ କଳା-ସମୀକ୍ଷକଗଣ ଅଜୈକପାଦ ଭୈରବଙ୍କୁ ଶ୍ରୀଜଗନ୍ନାଥଙ୍କ ମୂର୍ତ୍ତିର ଆଦି ଉତ୍ସ ରୂପେ ଗ୍ରହଣ କରନ୍ତି । ତେଣୁ ଅଜୈକପାଦ ଭୈରବ ଉପାସନା ଓ ଦଧିବାମନ ଉପାସନା ମଧ୍ୟରେ ଘନିଷ୍ଠ ଓ ଗଭୀର ସମ୍ପର୍କ ଥିବାର ମନେ ହୁଏ ।

କାଳକ୍ରମେ ବୈଷ୍ଣବ ମତବାଦ ଓଡ଼ିଶାରେ ଆଦୃତ ଓ ପ୍ରସାରିତ ହେବା ସଙ୍ଗେ ସଙ୍ଗେ ଶ୍ରୀଜଗନ୍ନାଥଙ୍କ ପରି ଶ୍ରୀଦଧିବାମନ ମଧ୍ୟ ବୈଷ୍ଣବମାନଙ୍କର ଇଷ୍ଟ ଦେବତା ରୂପେ ଉପାସିତ ହେଲେ । ଦଧି, ସର ଓ ଲବଣୀ ପ୍ରିୟ ବାଳକୃଷ୍ଣଙ୍କ ଲୀଳା ଆଧାରରେ 'ଦଧିବାମନ' ନାମର ସାର୍ଥକତା ପ୍ରତିପାଦନ କରାଯାଇଥିବା ଅନୁମିତ ହୁଏ । ଶ୍ରୀଜଗନ୍ନାଥଙ୍କ ତ୍ରିମୂର୍ତ୍ତି ମଧ୍ୟରୁ ପୃଥକ୍ କେବଳ ଶ୍ରୀଜଗନ୍ନାଥ ମୂର୍ତ୍ତି ଶ୍ରୀଦଧିବାମନ ନାମରେ ଅଭିହିତ ହୋଇଛନ୍ତି ବୋଲି ଅନେକ ମତ ଦିଅନ୍ତି । ବିଷ୍ଣୁ-କୃଷ୍ଣ ଦଧିବାମନଙ୍କ ପୂଜା ମହାକବି ସାରଳାଦାସଙ୍କ ବହୁ ପୂର୍ବରୁ ଓଡ଼ିଶାରେ ପ୍ରଚଳିତ ଥିବା ସାରଳା-ମହାଭାରତରୁ ପ୍ରମାଣିତ ହୁଏ ।

ଶ୍ରୀଦଧିବାମନ ଉପାସନାରେ ଜୈନ, ବୌଦ୍ଧ, ଶୈବ ଓ ବୈଷ୍ଣବ ମତବାଦ ଓ ବିଶ୍ୱାସର ସମନ୍ୱୟ ଘଟିଥିବା ସମ୍ଭାବନାକୁ

ଅସ୍ୱୀକାର କରାଯାଇ ନ ପାରେ । ସେ ଯାହାହେଉ, ଶ୍ରୀଜଗନ୍ନାଥ ସଂସ୍କୃତିର ଏକ ମୁଖ୍ୟ ଅଂଶ ରୂପେ ଶ୍ରୀଦଧିବାମନ ସଂସ୍କୃତି ଓଡ଼ିଶାରେ ବହୁ ପ୍ରାଚୀନ କାଳରୁ ପ୍ରଚାର ଓ ପ୍ରସାର ଲାଭ କରିଆସିଛି । ଗଜପତି ରାଜତ୍ୱକାଳରେ (୧୪୩୫—୧୫୩୩ ଖ୍ରୀ: ଅ:) ତତ୍କାଳୀନ ଆଗଙ୍ଗ-ଗୋଦାବରୀ ବିସ୍ତୃତ ଉତ୍କଳ ସାମ୍ରାଜ୍ୟରେ ପ୍ରସାର ଲାଭ କରିଥିଲା । ଫଳରେ ଓଡ଼ିଶାର ବିଭିନ୍ନ ଗ୍ରାମ, ମଠ, ମନ୍ଦିର ଓ ବ୍ୟକ୍ତିବିଶେଷଙ୍କ ଗୃହରେ ପ୍ରସ୍ତର, କାଷ୍ଠ, ମୃଣ୍ମୟ ଓ ପଟ୍ଟ ଚିତ୍ରାଙ୍କିତ ଶ୍ରୀଦଧିବାମନ ମୂର୍ତ୍ତି ପୂଜା ପାଇଆସୁଥିବାର ଦେଖାଯାଏ । ପ୍ରଭୁ ଶ୍ରୀଦଧିବାମନଙ୍କ ପୂଜା-ସ୍ଥାନ କ୍ଷେତ୍ର ରୂପେ କଳ୍ପିତ ହେବା ସଙ୍ଗେ ସଙ୍ଗେ ପ୍ରତ୍ୟେକ କ୍ଷେତ୍ର ଓ ବିଗ୍ରହ ସମ୍ପର୍କରେ ସ୍ୱତନ୍ତ୍ର ସ୍ୱତନ୍ତ୍ର କିମ୍ବଦନ୍ତୀ ଲୋକମୁଖରେ ଅଦ୍ୟାପି ପ୍ରଚଳିତ ଅଛି ।

ଶିକ୍ଷକ ଶ୍ରୀଯୁକ୍ତ ମଦନମୋହନ ରଥ ନିଜର ଗ୍ରାମ କୋଇଲୋରେ ପ୍ରତିଷ୍ଠିତ ଓ ଆରାଧିତ ଶ୍ରୀଦଧିବାମନଙ୍କୁ ଉପଜୀବ୍ୟ କରି ପ୍ରସ୍ତୁତ କାବ୍ୟଟିକୁ ରୂପ ଦେଇଛନ୍ତି । ସରଳ ସାବଲୀଳ ଭାଷାରେ ଶ୍ରୀଦଧି-ବାମନଙ୍କ ସମ୍ବନ୍ଧୀୟ ତଥ୍ୟକୁ ଉପସ୍ଥାପନ କରି ଶ୍ରୀଯୁକ୍ତ ରଥ ଧନ୍ୟ-ବାଦାର୍ହ ହୋଇଛନ୍ତି । ତାଙ୍କର ଏହି ସଫଳ ସାଧୁକାର୍ଯ୍ୟଦ୍ୱାରା ଓଡ଼ିଶାର ସୁଧୀ ପାଠକବର୍ଗ ଓ ଗବେଷକଗଣ ବିସ୍ମୃତପ୍ରାୟ ଦଧିବାମନ ସଂସ୍କୃତିର ନବବିକାଶ ସମ୍ବନ୍ଧରେ ଆଲୋକପାତ କରିବାପାଇଁ ଉତ୍ସାହିତ ହେବେ ବୋଲି ଆଶା ।

'କୀର୍ତ୍ତିରକ୍ଷରମାଳମ୍ବା ସ୍ଥିରା ଭବତି ଭୂତଳେ' ବାଣୀର ସତ୍ୟତା ଏବେ ବି ଅଛି ବୋଲି ରଥ ମହାଶୟଙ୍କ କାବ୍ୟଟି ପ୍ରମାଣ ଦେଉଛି । କବି ଶ୍ରୀଯୁକ୍ତ ରଥଙ୍କ ଲେଖନୀ ଚିରନିଃସ୍ୟନ୍ଦିନୀ ହେଉ ଏବଂ ତାଙ୍କର କାବ୍ୟସୁମନ ଜନସମାଜରେ ଆଦୃତି ଲାଭ କରୁ, ଏହାହିଁ ପ୍ରଭୁ ଶ୍ରୀଦଧିବାମନଙ୍କଠାରେ ପ୍ରାର୍ଥନା । ଶ୍ରୀଦଧିବାମନଙ୍କର ଜୟ ହେଉ ।

୧୯-୭-୯୨
ଭୁବନେଶ୍ୱର

**ଭଗବାନ ପଣ୍ଡା**
ସମ୍ପାଦକ, ସଂସ୍କୃତି ନିର୍ଦ୍ଦେଶାଳୟ, ଓଡ଼ିଶା

**Dr. Ashutosh Pattanayak,** M.A., Ph. D., D. Litt. (Utkal)
Professor (Dr. Artta Ballav Mohanty Chair)
P. G. Department of Oriya, Utkal University,
Vani Vihar, Bhubaneswar-751 004

# ଅଭିମତ

ମନ୍ଦିରମାଳିନୀ ପୁଣ୍ୟତୀର୍ଥମୟୀ ଉତ୍କଳଜନନୀ ସ୍ୱମହିମାରେ ଗରୀୟସୀ । କବିବର ରାଧାନାଥ ରାୟଙ୍କ ଭାଷାରେ—

"ସ୍ୱଭାବେ ଉତ୍କଳ ଶୋଭାର ନିଧାନ,
ମାତ୍ର ଏ ଶୋଭାରେ ଚୋର ଅଧିଷ୍ଠାନ
ବିନୁ ସିନା ମାତା ହୋଇଛି ବିବଶା,
ଭଜିଛି ଅରଣ୍ୟପ୍ରସୂନର ଦଶା ।"

ଉତ୍କଳଜନନୀର ଶୋଭାକୁ ସ୍ୱଲେଖନୀରେ କବିବର ରାଧାନାଥ ମହିମୋଜ୍ଜ୍ୱଳ କରି ପାରିଥିଲେ । ଠିକ୍ ସେହିପରି କବି ମଦନବାବୁ ଅସୁରେଶ୍ୱରର ଦଧିବାମନ ପୀଠକୁ ସ୍ୱକବିପ୍ରତିଭାଦ୍ୱାରା ଲୋକଲୋଚନକୁ ଆଣିବା ପାଇଁ ଚେଷ୍ଟା କରିଛନ୍ତି । ତାଙ୍କର ଏହି ଉଦ୍ୟମ ନିଶ୍ଚୟ ବନ୍ଦନୀୟ ଓ ସେ ମଧ୍ୟ ଏଥିପାଇଁ ଶ୍ଳାଘ୍ୟ । ମାତୃଭୂମିକୁ ମାତୃଭାଷା ମାଧ୍ୟମରେହିଁ ପ୍ରତିଷ୍ଠା ପ୍ରଦାନ କରାଯାଏ । କିନ୍ତୁ ଦୁଃଖର ବିଷୟ, ଆଧୁନିକ କବି ନିଜ ମାଟି, ପାଣି, ପବନ, ଜନନୀ, ଭାଷା, ସାହିତ୍ୟ ଇତ୍ୟାଦିକୁ ଛାଡ଼ି ବିଦେଶୀ ସାହିତ୍ୟ, ସଂସ୍କୃତି ପ୍ରତି ସମଧିକ ଦରଦୀ । ଆନନ୍ଦର କଥା, କବି ମଦନ-ବାବୁ ଗଙ୍ଗାଧର, ରାଧାନାଥ ପ୍ରଭୃତିଙ୍କ ପଦାଙ୍କ ଅନୁସରଣ କରି ଏହି ମାଟି, ପାଣି, ପବନ, ମନ୍ଦିର, ତୀର୍ଥକୁ ଭଲପାଇ ତାହାର ଗୁଣ ଗାନରେ ନିଜ କବିତ୍ୱର ପରାକାଷ୍ଠା ଦେଖାଇଛନ୍ତି । କବି ମଦନବାବୁଙ୍କର କବିତ୍ୱ ବିଚ୍ୟୁତିରେ କିଛି ତ କହିବାର ନାହିଁ ବରଂ ପ୍ରଶଂସା କରିବାର ରହିଛି । ସେ ନିଜ ଲେଖନୀର ଯାଦୁକରୀ ସ୍ପର୍ଶରେ ଦଧିବାମନ ମନ୍ଦିରର ଐତିହ୍ୟ ଓ ଦଧିବାମନଙ୍କୁ ଆହୁରି ମହିମାମଣ୍ଡିତ କରିପାରିଛନ୍ତି । ଦଧିବାମନ-ପୂଜା ଓଡ଼ିଶାରେ କେବଳ ପ୍ରସିଦ୍ଧ । ତେଣୁ ଏହା ଓଡ଼ିଶାର ଏକ ମୌଳିକ

ଉପାସନା । ଏଥିରେ ଅଛି ଓଡ଼ିଶାର ଏକ ମୌଳିକ ଉପାସନା । ଏଥିରେ ଅଛି ଓଡ଼ିଶାର ବୈଶିଷ୍ଟ୍ୟ । ଏହି ବୈଶିଷ୍ଟ୍ୟକୁ ଲୋକସମ୍ମୁଖରେ ଉପସ୍ଥାପନା କରି କବି ନିଜ ମୌଳିକ ପ୍ରତିଭାର ପରିଚୟ ଦେଇଛନ୍ତି । ଅମନ୍ଦଗାମିନୀ ମନ୍ଦାକିନୀର ସ୍ୱଚ୍ଛଧାରା ପରି ତାଙ୍କ କବିତ୍ୱର ପ୍ରବାହ କାବ୍ୟର ମୂଳରୁ ଶେଷ ପର୍ଯ୍ୟନ୍ତ ଅନୁଭୂତ ହୁଏ । ତାଙ୍କ କାବ୍ୟ ପଢ଼ିଲେ ରସିକଲ୍ଲୋଳକାର କବି ଦୀନକୃଷ୍ଣ ଦାସଙ୍କର ଏକ ପଦର ସାର୍ଥକତା ଅନୁଭବ କରି ହୁଏ । ସେହି ପଦଟି ହେଉଛି—

"କବିତ୍ୱ ମଳୟପବନବତ,
କରଇ ଶୁଷ୍କ ତରୁ ପଲ୍ଲବିତ ।"

କବି ମଦନବାବୁଙ୍କ ସମଗ୍ର କାବ୍ୟର ପଦାବଳୀରେ ରହିଛି ଅପୂର୍ବ ଲାଳିତ୍ୟ ଓ ଛନ୍ଦର ମାଧୁର୍ଯ୍ୟ । ତାଙ୍କ ପଦବିନ୍ୟାସରେ ସ୍ୱତଃସ୍ଫୂର୍ତ୍ତି ସ୍ୱାଭାବିକତା ସ୍ପଷ୍ଟ ବାରି ହୁଏ । ପ୍ରକୃତି ବର୍ଣ୍ଣନା, ଅଳଙ୍କାର ସଂଯୋଜନା ଆଦିରେ ସେ ଅସମ୍ଭବ ଧରଣର କୃତିତ୍ୱ ପ୍ରଦର୍ଶନ କରିଛନ୍ତି । ସେଥିପାଇଁ ସେ ନିଶ୍ଚୟ ପ୍ରଶଂସ୍ୟ । ଦୁର୍ବୋଧ, ବକ୍ଷିପ୍ତଚିତ୍ରାସମନ୍ୱିତ, ଅର୍ଥହୀନ, ଅପାଙ୍କ୍ତେୟ, ଅତ୍ୟାଧୁନିକ କବିତା-ଯୁଗରେ କବିଙ୍କର ଏହି ଉଦ୍ୟମକୁ ଆଗାମୀ ଯୁଗ ପାଇଁ ଏକ ବଳିଷ୍ଠ ସଙ୍କେତ ବୋଲି କୁହାଯାଇପାରେ ।

ଶେଷରେ କବିଙ୍କର ଉଜ୍ଜ୍ୱଳ ଭବିଷ୍ୟତ କାମନା କରୁଛି ।

ଇତି

ତା ୧୫ । ୬ । ୯୨

ଗୁଣମୁଗ୍ଧ

**ଆଶୁତୋଷ ପଟ୍ଟନାୟକ**

# ମୁଖବନ୍ଧ

**ପୂର୍ବାଭାସ :**

ଶ୍ରୀଶ୍ରୀଦଧିବାମନଜୀଉ ଅସୁରେଶ୍ୱରର ଇଷ୍ଟଦେବତା ରୂପେ ଆବହମାନ କାଳରୁ କୋଇଲେ ଗ୍ରାମରେ ବିଜେ ହୋଇ ପୂଜା ପାଇ ଆସୁଛନ୍ତି । ଶ୍ରୀଜୀଉଙ୍କର ବିଗ୍ରହ ପ୍ରତିଷ୍ଠାର କାଳ ନିରୂପଣ କରିବା ପୂର୍ବରୁ ଆମକୁ ପୁରୁଷୋତ୍ତମ କ୍ଷେତ୍ରର ଅଧୀଶ୍ୱର ଶ୍ରୀଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ପରମ ସେବକ ରୂପେ ବିଦିତ ଓଡ଼ିଶାର ଗଜପତି ମହାରାଜାଙ୍କର କାଞ୍ଚି ବିଜୟ ଘଟଣା ପ୍ରତି ଦୃଷ୍ଟି ଦେବାକୁ ପଡ଼ିଥାଏ । ଏହି ଇତିହାସ ପ୍ରସିଦ୍ଧ ଘଟଣାର ସମୟ ଖ୍ରୀ: ୧୪୭୦ ଅଗଷ୍ଟ ମାସ ବୋଲି Journal of the Bihar Research Society Vol. XXXII, Part-1, March 1946 ଏବଂ History of Orissa, By R. D. Benarjee, Vol-1ରେ ନିର୍ଦ୍ଧାରିତ ହୋଇଛି ।

ଠିକ୍ ଏହି ଘଟଣାର ପରବର୍ତ୍ତୀ କାଳରେ ଶ୍ରୀଜଗନ୍ନାଥଙ୍କର ପରମ ଭକ୍ତ ଶ୍ରୀଜୀଉଙ୍କର ବଡ଼ପଣ୍ଡାଙ୍କ ଦ୍ୱିତୀୟ ପୁତ୍ର ଶ୍ରୀ ସିଂହନନ୍ଦନ ନିଜେ ମହାପ୍ରଭୁଙ୍କଦ୍ୱାରା ପ୍ରେରିତ ହୋଇ (ପୁସ୍ତକରେ ବର୍ଣ୍ଣିତ ହୋଇଥିବା ଅନୁସାରେ) ମାଣିକ ଗଉଡ଼ୁଣୀର ଦଧିଭଣ୍ଡରେ ଦର୍ଶନ କରିଥିବା ଶ୍ରୀଜଗନ୍ନାଥଙ୍କ ବାମନ ବିଗ୍ରହର ପ୍ରତିଚ୍ଛବିକୁ ନିଖୁଣ ଭାବେ ଦାରୁବିଗ୍ରହରେ ସ୍ଥାପନା କରିଥିବା ବିଷୟ ସ୍ଥାନୀୟ ଲୋକୋକ୍ତିରୁ ସ୍ପଷ୍ଟଭାବେ ଜଣାଯାଏ । ଲୋକେ କହନ୍ତି—

"ବଡ଼ପଣ୍ଡା-ପୁଅ ସିଂହନନ୍ଦନ
ଢିଅଁ ବସାଇଲେ ଦଧିବାମନ ।"

ଏହା ହିଁ ଶ୍ରୀଶ୍ରୀଦଧିବାମନଜୀଉଙ୍କ ବିଗ୍ରହର ଆଦ୍ୟ ତଥା ମୁଖ୍ୟ ରୂପବିନ୍ୟାସର ପରିପ୍ରକାଶ ମାତ୍ର । ପ୍ରବୀଣ ଜଗନ୍ନାଥ ଧର୍ମ-ପ୍ରଚାରକ ଓ ଗବେଷକ ପଣ୍ଡିତ ସଦାଶିବ ରଥଶର୍ମା ମହାଶୟ ମଧ୍ୟ ଅସୁରେଶ୍ୱର ଶ୍ରୀଶ୍ରୀଦଧିବାମନଙ୍କ ମନ୍ଦିରରେ ପୁନଃ ପ୍ରତିଷ୍ଠିତ ହୋଇଥିବା ଶ୍ରୀଶ୍ରୀମଦନମୋହନ ଓ ମହାଲକ୍ଷ୍ମୀଙ୍କ ବିଗ୍ରହ ପ୍ରତିଷ୍ଠାର ଉତ୍ସବରେ ଭାଷଣ ମାଧ୍ୟମରେ ଏହିପରି ନିଜର ମତବ୍ୟକ୍ତ କରିଥିଲେ ।

ଶ୍ରୀଦଧିବାମନଜୀଉ ଶ୍ରୀକୃଷ୍ଣ ଓ ଶ୍ରୀଜଗନ୍ନାଥଙ୍କର ଅଭିନ୍ନ ରୂପ। ଶ୍ରୀଜଗନ୍ନାଥଙ୍କ ସଦୃଶ ଶ୍ରୀଦଧିବାମନ ଦାରୁକଳେବର । 'ତନ୍ତ୍ରଯାମଳ' ପୁସ୍ତକରେ ବର୍ଣ୍ଣିତ ଅଛି ଯେ, କେବଳ ଶ୍ରୀଜଗନ୍ନାଥ ଦାରୁରୂପୀ ଓ ପୁରୁଷୋତ୍ତମ କ୍ଷେତ୍ରାଧିପତି । ଯଥା:—

"ଭାରତେ ଚୋତ୍କଳଦେଶେ ଭୂସ୍ୱର୍ଗେ ପୁରୁଷୋତ୍ତମେ
ଦାରୁରୂପୀ ଜଗନ୍ନାଥୋ ଭକ୍ତାନାମଭୟପ୍ରଦଃ ॥"

ଶ୍ରୀ ଦଧିବାମନଙ୍କ ଦାରୁକଳେବର ପୂର୍ବରୁ ଶ୍ରୀଜୀଉଙ୍କର ଶାଳଗ୍ରାମ ପ୍ରାପ୍ତି ଓ ପରେ ଶ୍ରୀଗୋପାଳଜୀଉ ରୂପେ ପ୍ରତିଷ୍ଠା ଲାଭ କରିବା ବିଷୟ ଏହି ପୁସ୍ତକରେ ବିସ୍ତୃତଭାବେ ବର୍ଣ୍ଣିତ ହୋଇଛି । ସେଥିରୁ ଏତିକି ବୁଝାଯାଇପାରେ ଯେ, ଶ୍ରୀ ଦଧିବାମନ ସ୍ୱୟଂ ଶ୍ରୀକୃଷ୍ଣ ହୋଇଥିବାରୁ ତାଙ୍କର ଆଦ୍ୟ ଶାଳଗ୍ରାମ ଉପରେ ଗାଈ ସ୍ୱତଃ ଯାଇ କ୍ଷୀର ଢାଳିବା, ତାହା ଗୋପାଳଦ୍ୱାରା ପୋଖରୀପଙ୍କରୁ ଆବିଷ୍କୃତ ହେବା, ଗୋପାଳ-ମାନଙ୍କ ମେଳରେ ଯାଇ ଗୋପାଳଜୀଉ ରୂପେ ପ୍ରତିଷ୍ଠିତ ହୋଇ ଗ୍ରାମର ନାମ ଗୋପାଳପୁର ହେବା ଇତ୍ୟାଦି ଘଟଣାମାନ ଘଟିଛି । ଶ୍ରୀକୃଷ୍ଣ ନନ୍ଦ ଗୋଆଳ ଘରେ ବଢ଼ିଥିବାରୁ ତାଙ୍କର ଗୋପପୁର, ଗୋପାଳ ବାଳକ, ଗୋପବାଳୀ, ଗୋ-ବତ୍ସ ଓ ଗୋରସ ସାମଗ୍ରୀ ସହିତ ନିବିଡ଼ ସମ୍ପର୍କ ଥିବା ବିଷୟ ପୁରାଣମାନଙ୍କରୁ ସୂଚିତ ହୁଏ । ତେଣୁ ଶ୍ରୀଦଧିବାମନଜୀଉଙ୍କ ବିଗ୍ରହ ମଧ୍ୟରେ ଥିବା ଶାଳଗ୍ରାମ ଖଣ୍ଡ ବା ପିଣ୍ଡ ନିଶ୍ଚୟ କୌଣସି ଜୀବନ୍ୟାସପ୍ରାପ୍ତ ଗୋପାଳମୂର୍ତ୍ତିର ଭଗ୍ନାବଶେଷ ଅଟେ, ଏଥିରେ ସନ୍ଦେହ ନାହିଁ । ଯେହେତୁ ଓଡ଼ିଶାରେ ପ୍ରାୟ ୧୨ଶ ଶତାବ୍ଦୀ-ଠାରୁ ୧୪ଶ ଶତାବ୍ଦୀ ପର୍ଯ୍ୟନ୍ତ ବାଲେଶ୍ୱରଠାରୁ ପୁରୀ ଜିଲ୍ଲାର ଉପକୂଳବର୍ତ୍ତୀ ଅଞ୍ଚଳ ତଥା ଅନ୍ୟାନ୍ୟ ପୁରପଲ୍ଲୀରେ କେବଳ ଗୋପାଳ-କୃଷ୍ଣ ବା ଗୋପୀନାଥଙ୍କର ମୂର୍ତ୍ତି ପୂଜିତ ହେଉଥିବାର ବହୁଳ ପୌରାଣିକ ଓ ଐତିହାସିକ ପ୍ରମାଣ ରହିଛି । ୧୫ଶ ଶତାବ୍ଦୀରେ ଶ୍ରୀଚୈତନ୍ୟ-ଦେବଙ୍କଦ୍ୱାରା ଓଡ଼ିଶାରେ ରାଧାକୃଷ୍ଣ ଯୁଗଳମୂର୍ତ୍ତିର ପୂଜା ଆରମ୍ଭ କରାଯାଇଛି ବୋଲି ଐତିହାସିକ ତଥ୍ୟ ଦେଖିବାକୁ ମିଳେ । ଖ୍ରୀ: ୧୩ଶ ଶତାବ୍ଦୀରେ ଶ୍ରୀ ଅନଙ୍ଗଭୀମଦେବ ୩ୟଙ୍କ ନାଗରୀ ତାମ୍ର ଶାସନରୁ ଜଣାଯାଏ—

"ଏତେ ଚାଂଶଃ କଳାପୁଂସଃ କୃଷ୍ଣସ୍ତୁ ଭଗବାନ୍ ସ୍ୱୟମ୍ ।"

ଏତଦ୍ ବ୍ୟତୀତ History of Bengal Vol. 1, Page—220ରେ ମଧ୍ୟ ବର୍ଣ୍ଣିତ ଅଛି—

'କୋଇଲୋ' ଗ୍ରାମର ଉତ୍ପତ୍ତି ସମ୍ବନ୍ଧରେ ଏତିକି କୁହାଯାଇ ପାରେ ଯେ, ଶ୍ରୀ ସିଂହନନ୍ଦନଙ୍କଦ୍ୱାରା ଶ୍ରୀଦଧିବାମନଙ୍କ ବିଗ୍ରହ ପ୍ରତିଷ୍ଠା ସମୟରେ ଶ୍ରୀଜୀଉଙ୍କ ନିର୍ଦ୍ଦେଶକ୍ରମେ କୋଇଲି ପାଇଁ ଏ ଗ୍ରାମର ନାମ ଏପରି ହୋଇଛି । ପୂର୍ବରେ ସେଠାରେ ଘୋର ଅରଣ୍ୟ ଥିଲା । ପାଖା-ପାଖି ମଧ୍ୟ ଜନବସତି ନ ଥିଲା । କିନ୍ତୁ ଲୁଣା ନଦୀ ତୀରବର୍ତ୍ତୀ ଅନ୍ୟ କେତେକ ଗ୍ରାମ ବା ଶାସନ ପୂର୍ବରୁ ଥିବା କଥା କେନ୍ଦୁପାଟଣା ଗ୍ରାମରୁ ମିଳିଥିବା (ଶକାବ୍ଦ ୧୨୧୭-୧୮ ଅର୍ଥାତ୍ ଖ୍ରୀ: ଅ: ୧୨୯୫ରେ) ତାମ୍ର ଶାସନରୁ ଜଣାଯାଏ । ଏହି ତାମ୍ର ଶାସନଟି କେନ୍ଦ୍ରାପଡ଼ା-କେନାଲ ଖୋଳାଯିବା ସମୟରେ ୧୨ଫୁଟ ମାଟିତଳୁ ମିଳିଥିଲା । ଏଥିରେ ବର୍ଣ୍ଣିତ ଅଛି ଯେ, ରାଜା ଶ୍ରୀ ନରସିଂହ ଦେବ କୁମାର ମହାପାତ୍ର ଖ୍ରୀମଦେବ ଶର୍ମାଙ୍କୁ ଖଣ୍ଡସାହି, ଖ୍ରୀମନାରାୟଣପୁର, ଦେବପଡ଼ା, ବଭୂତିପଡ଼ା ଓ ଗଙ୍ଗାନରସିଂହପୁର (ସମ୍ଭବତଃ ଏବକାର ଗହଗାନରସିଂହପୁର) ଆଦି ଗ୍ରାମ ଓ ଶାସନ ଦାନ କରିଥିଲେ । (History of Orissa, by H. K. Mahatab.)

ଗଙ୍ଗ ଓ କେଶରୀବଂଶର ରାଜତ୍ୱ କାଳରେ କଟକ ସହିତ ପୁରୀର ସମ୍ପର୍କ ନିବିଡ଼ ଥିବାର ଜଣାଯାଏ । କାରଣ, ବର୍ତ୍ତମାନର କଟକ ନଗର ବା ଚଉଡ଼ାନାସୀ କଟକ ସେତେବେଳେ ବାରଣସୀ କଟକ ରୂପେ ପରିଚିତ ଥିଲା । ସେଠାରେ କପିଳେନ୍ଦ୍ର ଦେବ ରାଜଧାନୀ ସ୍ଥାପନ କରିଥିଲେ । ପୁରୁଷୋତ୍ତମ ଦେବ ମଧ୍ୟ ସେହିଠାରେ ଅବସ୍ଥାନ କରୁଥିବାର ପ୍ରମାଣ କୋଣ୍ଡାବଡ଼ୁ ତାମ୍ର ଶାସନରୁ ଜଣାପଡ଼େ । ଯଥା:—

"କଟକାଖ୍ୟା ପୁରୀ ଯସ୍ୟ ରାଜଧାନୀ ବିରାଜତେ,
ମହାନଦୀପରିସରେ ଶକ୍ରସ୍ୟେବାମରାବତୀ ॥"

I.A., Vol. XX, P—390

ତେଣୁ ପୁରୁଷୋତ୍ତମ ଦେବ ଖ୍ରୀ: ଅ: ୧୪୯୭ରେ କଟକ ଜିଲ୍ଲାରେ ଥିବା ପୁଣ୍ୟତୋୟା କଳିର ଗଙ୍ଗା ଚିତ୍ରୋତ୍ପଳା କୂଳରେ ତନୁତ୍ୟାଗ କରିବାର ଜଣାଯାଏ ।

ଯେଉଁଠାରେ ନଦୀ ଉତ୍ତରାଭିମୁଖୀ ହୋଇ ବହି ଯାଇଥାଏ ତାହା ସେଠାରେ ପାପନାଶିନୀ ପବିତ୍ର ଗଙ୍ଗା ନାମରେ ଖ୍ୟାତ ହୋଇଥାଏ । ଯେଣୁ ଶାସ୍ତ୍ରରେ କଥିତ—

"ତତ୍ର ଗଙ୍ଗା ସମାଖ୍ୟାତା ଯତ୍ରୋତ୍ତରାବହା ନଦୀ ।"

ମହାନଦୀର ଶାଖାର ନାମ ଚିତ୍ରୋତ୍ପଳା । ଏହା ଅସୁରେଶ୍ୱର ପୂର୍ବରୁ ଉତ୍ତରବାହିନୀ ହୋଇ କିଛି ବାଟ ପ୍ରବାହିତ ହେବା ପରେ ପୂର୍ବାଭିମୁଖିନୀ ହୋଇଛି । ତେଣୁ ଚିତ୍ରୋତ୍ପଳା ଏଠାରେ ପବିତ୍ରା ଗଙ୍ଗାତୁଲ୍ୟା । ସେଥିପାଇଁ ଧାର୍ମିକ ତତ୍ତ୍ୱଦର୍ଶୀମାନେ କହିଛନ୍ତି—"କଳୌ ଚିତ୍ରୋତ୍ପଳା ଗଙ୍ଗା ।" ଏହି ଦୃଷ୍ଟିରୁ ଏହାର ତୀରରେ ସିଦ୍ଧପୁରୁଷ ଅଚ୍ୟୁତାନନ୍ଦ ଆଶ୍ରମ ସ୍ଥାପନ କରିଥିଲେ, ଯାହା ଏବେ ନେମାଳବଟ ବା ଗାଦିମଠ ନାମରେ ପରିଚିତ । ଆହୁରି ମଧ୍ୟ ଶ୍ରୀଦଧିବାମନଜୀଉ ଏହି ଚିତ୍ରୋତ୍ପଳା-ତୀରରେ ସ୍ନାନପୂର୍ଣ୍ଣିମାରେ ସ୍ନାନ କରନ୍ତି । ଯାହା ଏବେ ମଧ୍ୟ ପ୍ରଚଳିତ ।

ଶ୍ରୀ ସିଂହନନ୍ଦନ ଏହି ପବିତ୍ର କଳରେ ଗଙ୍ଗା ନାମରେ ଖ୍ୟାତ ଚିତ୍ରୋତ୍ପଳାର ଶାଖାନଦୀ ପୂତସଲିଳା 'ଲୁଣା' କୂଳରେ ଶ୍ରୀଦଧିବାମନଜୀଉଙ୍କ ବିଗ୍ରହ ପ୍ରତିଷ୍ଠା କରି ମାଦଳାପାଞ୍ଜି ଅନୁସାରେ ୩୬ ପାଠକ ସେବାଯୂତଙ୍କୁ ନିଯୁକ୍ତି ଦେଇ ଶ୍ରୀଜୀଉଙ୍କର ସେବା ପୂଜାର ବ୍ୟବସ୍ଥା କରାଇଥିଲେ । କୋଇଲେ ଗ୍ରାମରେ ଥିବା ବ୍ରାହ୍ମଣମାନେ ତାଙ୍କଦ୍ୱାରା ପୁରୀରୁ ଅଣାଯାଇ ଥିବାର ପ୍ରମାଣ ମଧ୍ୟ ମିଳେ । ଏବେ ସୁଦ୍ଧା ଏଠାକାର ବ୍ରାହ୍ମଣମାନେ ଶୁଭକର୍ମର ନିମନ୍ତ୍ରଣ ପତ୍ରମାନଙ୍କରେ ପୁରୀର "ବୀରରାମଚନ୍ଦ୍ରପୁର ଶାସନ ନିବାସୀ" ବୋଲି ପରିଚୟ ପ୍ରଦାନ କରିଥାଆନ୍ତି ।

କଟକ୍ ଜିଲ୍ଲାର ଅସୁରେଶ୍ୱର-ପ୍ରଗଣାର ଉତ୍ପତ୍ତି ସମ୍ବନ୍ଧରେ ଏତିକ ଧାରଣା ଦିଆଯାଇ ପାରେ ଯେ, ମୋଗଲଶାସନ, ଗଙ୍ଗ ଓ ସୂର୍ଯ୍ୟବଂଶର ଶାସନ ଏବଂ ପରେ ଇଂରେଜ ଶାସନ କାଳରେ ଏହାର ସ୍ଥିତି ଅକ୍ଷୁର୍ଣ୍ଣ ରହିଥିଲା । Manomohan Chakravartyଙ୍କ J. A. S. B. New Series, Vol. XII, 1916, No. 1, Page—29-56ରେ ଉଲ୍ଲିଖିତ ଆଇନ୍ ଆକବରୀ ବର୍ଣ୍ଣନାନୁଯାୟୀ ଆକବରଙ୍କ ସମୟରେ ଓଡ଼ିଶା ୫ ଗୋଟି ସରକାର ଓ ୨୧୯ଟି ମାହାଲରେ ବିଭକ୍ତ

ହୋଇଥିଲା । କଟକ ଏ ସବୁର ହେଡ଼୍‌କ୍ୱାଟର ଥିଲା । ଏଠାରେ ସୁବାଦାର ଓ ନାଏବ ସୁବାଦାରମାନ ରହୁଥିଲେ । କଟକ ଓ ପୁରୀ ଅସ୍ତୁ ସରକାର ବିଭାଗରେ ଥିଲା । ଏଥିରୁ ମୋଟ ୯,୧୪,୩୨, ୭୩୦ 'ଦାମ' ରାଜସ୍ୱ ମିଳୁଥିଲା । (ଦାମ—୪୦ ଦାମରେ ଏକ ଟଙ୍କା) । ଆଇନଆକବରୀରୁ ଜଣାଯାଏ, ୪ ନମ୍ବର ମାହାଲର ନାମ ଥିଲା ପୂରୁବବଶ୍, ଯାହାକି ମାଦଳା ପାଞ୍ଜିରେ 'ପୂର୍ବଦଗଦଣ୍ଡପାଟ' ନାମରେ ବର୍ଣ୍ଣିତ । ଏଥିରେ ଅସୁରେଶ୍ୱର, ଚଉଦକୁଳାଟ ଓ ତେଲିବଣି ଆଦିର ନାମ ଉଲ୍ଲିଖିତ । ଖ୍ରୀ:ଅ: ୧୫୯୨ରେ ମାନସିଂହ ମୋଗଲ ଦରବାରରେ ଥିବା ଓଡ଼ିଶାର ଜମିଦାରମାନଙ୍କର ଯେଉଁ ସ୍ଥାନ ନିରୂପଣ କରିଥିଲେ ତାହାର କିଛି ଅଂଶ କଟକରେ ଥିବା ତଦାନୀନ୍ତନ ଇଂରେଜ କମିଶନରଙ୍କ ସେକ୍ରେଟାରୀ ଏ. ଷ୍ଟାର୍ଲିଂ An account of Orissa Published in Asiatic Researches Vol. XV, 1828, Page—326ରେ ପ୍ରକାଶ କରିଛନ୍ତି । ଏଥିରୁ ମଧ୍ୟ ସୂଚିତ ହୁଏ, ଆଳ ରାଜା ୫୦୦ ସୈନ୍ୟଙ୍କ ଅଧ୍ୟକ୍ଷ ଥିଲେ । ଏହାଙ୍କ ଅଧୀନରେ ଗୋଟିଏ କିଲ୍ଲା ଓ ଗୋଟିଏ ଜମିଦାରୀ ଥିଲା । ଏହାଙ୍କ ଅଧୀନରେ ଥିବା ସରଦାରମାନେ କାଳକ୍ରମେ ସ୍ୱାଧୀନ ହୋଇ ନିଜେ ଜଣେ ଜଣେ ଜମିଦାର ହୋଇଗଲେ । କନିକା, କୁଜଙ୍ଗ, ଦର୍ପଣ ଆଦି ସେଗୁଡ଼ିକ ମଧ୍ୟରୁ ଅନ୍ୟତମ । ମାତ୍ର ପରେ କନିକା ଜମିଦାର ତାଙ୍କ ଅଧୀନରେ ନାଏବମାନ ନିଯୁକ୍ତ ଦେଇ ବିଭିନ୍ନ ସ୍ଥାନରେ କଚେରୀମାନ ବସାଇ ରାଜସ୍ୱ ଆଦାୟ କରୁଥିଲେ ଓ ପ୍ରଜାଙ୍କ ଖବର ବୁଝୁଥିଲେ ।

ଅସୁରେଶ୍ୱରରେ ଏହି ଜମିଦାରଙ୍କର ୭ ଗୋଟି ଜମିଦାରୀ ଥିଲା । ଶ୍ରୀଦଧିବାମନଜୀଉଙ୍କ ସମ୍ପତ୍ତିବାଡ଼ର ଦାୟିତ୍ୱ ପରେ ଜମିଦାର ହୋଇଥିବା ଏହି ୭ ଜଣ ନାଏବ ବୁଝାଶୁଝା କରୁଥିଲେ । ମାତ୍ର ଇଷ୍ଟଇଣ୍ଡିଆ କମ୍ପାନୀ-ସରକାର ସୂର୍ଯ୍ୟାସ୍ତ ଆଇନ ବଳରେ ଏମାନଙ୍କର ସମ୍ପତ୍ତି ବାଜ୍ୟାପ୍ତ କରି ବଙ୍ଗଳାର ଜମିଦାରମାନଙ୍କୁ ନିଲାମସୂତ୍ରେ ଜମିଦାରୀ ପ୍ରଦାନ କରିଥିଲେ । ଏହା ଫଳରେ ଖ୍ରୀ:ଅ: ୧୮୧୭ ପୂର୍ବରୁ ବଙ୍ଗର ଜମିଦାରଗଣ ଶ୍ରୀଦଧିବାମନଜୀଉଙ୍କର ଜମିଦାର ହୋଇଥିଲେ । ଖ୍ରୀ:ଅ: ୧୯୪୩ରେ କମିଶନର C. G. Nayar ଘୋଷଣାପତ୍ର ପ୍ରକାଶ କରି ଓଡ଼ିଶାର ଶ୍ରୀଦଧିବାମନଜୀଉଙ୍କର ମନ୍ଦିର ସର୍ବସାଧାରଣଙ୍କର

ବୋଲି ଘୋଷଣା କରାଇଥିଲେ । ଏହା ପରେ ଖ୍ରୀ:ଅ: ୧୯୭୯ଠାରୁ ଓଡ଼ିଶା ସରକାରଙ୍କର ଦେବୋତ୍ତର କମିଶନର ମନ୍ଦିର ନିଜ ହାତକୁ ନେଇ ଟ୍ରଷ୍ଟ-ବୋର୍ଡ଼ ନିଯୁକ୍ତ କଲେ । ବର୍ତ୍ତମାନ ଟ୍ରଷ୍ଟବୋର୍ଡ଼ଙ୍କ ତତ୍ତ୍ୱାବଧାନରେ ମନ୍ଦିର ପରିଚାଳିତ ହେଉଛି ।

ପ୍ରସିଦ୍ଧ ଐତିହାସିକମାନଙ୍କଦ୍ୱାରା ଲିଖିତ ପୁସ୍ତକମାନଙ୍କରୁ ତଥ୍ୟାଦି ସଂଗ୍ରହ କରି ଶ୍ରୀଶ୍ରୀଦଧିବାମନଜୀଉ ଓ ତାଙ୍କ ବଳେସ୍ଥଳୀ ତଥା ମନ୍ଦିର ସଂସ୍ଥାନରେ ଯତ୍କିଞ୍ଚିତ୍ ସୂଚନା ଦେଲି । ଏହା ପାଠକମାନଙ୍କ ପକ୍ଷେ ପୁସ୍ତକ ବର୍ଣ୍ଣିତ ବିଷୟବସ୍ତୁ ଅବଗତିରେ ସହାୟକ ହେବ ବୋଲି ଆଶା କରେ ।

## ସ୍ୱାଭିମତ:

ମାଳୀ ପୁଷ୍ପୋଦ୍ୟାନମାନଙ୍କରୁ ବିବିଧ ପୁଷ୍ପ ଚୟନ କରି ନିଜ ସୌନ୍ଦର୍ଯ୍ୟବୋଧର ସାମର୍ଥ୍ୟରେ ପ୍ରେରିତ ହୋଇ ଯେପରି ମନୋରମ ମାଳାମାନ ରଚନା କରି ଦେବତା ତଥା ମହାତ୍ମାମାନଙ୍କ ଉଦ୍ଦେଶ୍ୟରେ ଅର୍ପଣ କରିଥାଏ ସେହିପରି ମୁଁ ବହୁ ଶ୍ରମ ସ୍ୱୀକାରପୂର୍ବକ କେଉଁ ହଜିଲି ଅତୀତର ମୃତ୍ତି ମଧ୍ୟରୁ ନାନା କିମ୍ବଦନ୍ତୀ, ଭଗ୍ନାବଶେଷ, ଗୁରୁଜନଙ୍କ ମୁଖନିଃସୃତ ବାଣୀ ଓ ଲୋକମତରୁ ତଥ୍ୟାବଳୀ ସଂଗ୍ରହ କରି ତତ୍ସହିତ ବିଭୁକୃପାଜନିତ ସ୍ୱକୀୟ ଭାବନାରାଜିର ସମ୍ମିଶ୍ରଣରେ ଧାର୍ମିକ-ତତ୍ତ୍ୱ-ସନ୍ନିବିଷ୍ଟ ମୋର ପରମାରାଧ୍ୟ ଶ୍ରୀଶ୍ରୀଦଧିବାମନଜୀଉଙ୍କ ମହିମା ଗାନ-ପୂର୍ବକ ଏହି କ୍ଷୁଦ୍ର କାବ୍ୟଟି ରଚନା କରି ସହୃଦୟ ପାଠକମାନଙ୍କ ଉଦ୍ଦେଶ୍ୟରେ ଅର୍ପଣ କରିବା ପାଇଁ ଯତ୍ପରୋନାସ୍ତି ଉଦ୍ୟମ କରିଅଛି ।

ଉକ୍ତ କାବ୍ୟଟି ଆମୂଳଚୂଳ ସର୍ବଜନବୋଧ ହେଲା ଭଳି ସରଳ ଭାଷାରେ ଓ ସାବଲୀଳ 'ବଙ୍ଗଳାଶ୍ରୀ' ଛନ୍ଦରେ ରଚନା କରି ଓଡ଼ିଆ ଭାଷାର ମୌଳିକ ପରମ୍ପରା ତଥା ଶୈଳୀକୁ ଦୃଷ୍ଟିରେ ରଖି ମୋର ଅଗଣିତ ଭକ୍ତ ବଂଶଧରଙ୍କୁ ଏହି ମହିମାପୂର୍ଣ୍ଣ ପୀଠସ୍ଥଳୀ ଓ ପୀଠାଧୀଶଙ୍କ ସମ୍ପର୍କରେ ସମ୍ୟକ୍ ଧାରଣା ଦେବାକୁ ପ୍ରୟାସ କରିଅଛି ।

କାବ୍ୟ-ରଚନାରେ ସମ୍ପୂର୍ଣ୍ଣ ଅନଭିଜ୍ଞ ମୋର ପ୍ରଥମ ଚେଷ୍ଟା-ପ୍ରସୂତ ଆଧ୍ୟାତ୍ମିକଭାବସମ୍ବଳିତ କିମ୍ବଦନ୍ତୀମୂଳକ ଏହି କ୍ଷୁଦ୍ର

'ଶ୍ରୀଶ୍ରୀଦଧିବାମନ' କାବ୍ୟରେ ଯଦି କିଛି ତ୍ରୁଟି ଥାଏ ତେବେ ସହୃଦୟ ଭଗବଦ୍‌ଭକ୍ତପ୍ରେମୀ ପାଠକପାଠିକାବୃନ୍ଦ, ବିଦଗ୍ଧ ଭକ୍ତକବି ଅଭିମନ୍ୟୁ ସାମନ୍ତ ସିଂହାରଙ୍କ ବିଦଗ୍ଧ-ଚିନ୍ତାମଣିର ପବିତ୍ର ପଙ୍‌କ୍ତି—

"ଅମ୍ଭୁ ଯେ ହେଉ ସେ ହେଉ ଶାଳଗ୍ରାମସ୍ନାନେ,
ଅଗ୍ରାହ୍ୟ ହୁଏ କି କା'ର ପାଦୋଦକଜ୍ଞାନେ ।"

ନ୍ୟାୟରେ କ୍ଷମା ପ୍ରଦାନପୂର୍ବକ ଏହାକୁ ସାଦରେ ପାଠ କଲେ ମୋର ଶ୍ରମ ସାର୍ଥକ ହେବ ।

## କୃତଜ୍ଞତା-ଜ୍ଞାପନ:

ଏହି ପୁସ୍ତକ ପ୍ରକାଶନର ଶୁଭ ଅବସରରେ ମୋର ବାଲ୍ୟ-ଶିକ୍ଷା-ଗୁରୁ ପରମ ପୂଜନୀୟ ଶ୍ରୀଯୁକ୍ତ ଗୋଲୋକ ଚନ୍ଦ୍ର ପ୍ରଧାନ (ଦ୍ୱିଜ୍ଞପ୍ରିୟ ଭଞ୍ଜ) ବହୁମୂଲ୍ୟ ସମୟୋଚିତ ପରାମର୍ଶ ଦେଇଥିବାରୁ ମୁଁ ସେହି ମହାଶୟଙ୍କ ନିକଟରେ ଗଭୀର କୃତଜ୍ଞତା ଜ୍ଞାପନ କରୁଛି ।

ଓଡ଼ିଶାର ଗଜପତି ମହାରାଜା ଶ୍ରୀ ଦିବ୍ୟସିଂହ ଦେବ ମହୋଦୟ ଶ୍ରୀଶ୍ରୀଦଧିବାମନଜୀଉଙ୍କ ପବିତ୍ର ଲୀଳାଚରିତ ବିବର୍ଣ୍ଣିତ ଏହି ପୁସ୍ତକର ବିଶେଷତ୍ୱ ଉପଲବ୍‌ଧି କରି ଶୁଭବାର୍ତ୍ତା ପ୍ରେରଣ କରିଥିବାରୁ ମୁଁ ସେହି ଉଦାର ହୃଦୟଙ୍କ ନିକଟରେ ଚିରକୃତଜ୍ଞ ।

ରାଜ୍ୟ-ସଂସ୍କୃତିମନ୍ତ୍ରୀ ଶ୍ରୀଯୁକ୍ତ ଶରତ୍ କୁମାର କର ମହୋଦୟ ପ୍ରେରଣାମୟୀ ବାର୍ତ୍ତା ପ୍ରଦାନ କରିଥିବାରୁ ମୁଁ ସେ ମହାଶୟଙ୍କୁ ହାର୍ଦ୍ଦିକ କୃତଜ୍ଞତା ଜଣାଉଛି ।

ଉତ୍କଳ ବିଶ୍ୱବିଦ୍ୟାଳୟର ଲବ୍‌ଧପ୍ରତିଷ୍ଠ ଓଡ଼ିଆ ଅଧ୍ୟାପକ ଡକ୍ଟର ଆଶୁତୋଷ ପଟ୍ଟନାୟକ ଓ ସଂସ୍କୃତି ନିର୍ଦ୍ଦେଶାଳୟର ବରିଷ୍ଠ ସମ୍ପାଦକ ଡକ୍ଟର ଭଗବାନ ପଣ୍ଡା ମହୋଦୟ ପାଣ୍ଡୁଲିପିଟିକୁ ପାଠ କରି ସୁଚିନ୍ତିତ ଅଭିମତ ପ୍ରଦାନ କରିଥିବାରୁ ମୁଁ ସେହି ମହାଶୟଦ୍ୱୟଙ୍କୁ ଆନ୍ତରିକ କୃତଜ୍ଞତା ଜଣାଉଛି ।

ମୋର ଅଗ୍ରଜ ପ୍ରତିମ ପଣ୍ଡିତ ହରେକୃଷ୍ଣ ଧୂପାଳଶର୍ମା ମୂଳ ପାଣ୍ଡୁଲିପିଟିକୁ ସମ୍ପୂର୍ଣ୍ଣ ପାଠ କରି ପରିଲକ୍ଷିତ ହେଉଥିବା ସମସ୍ତ ତ୍ରୁଟି ବିଚ୍ୟୁତି ସଂଶୋଧନ କରିବା ସଙ୍ଗେ ସଙ୍ଗେ ତାହାର ପୁନର୍ଲିଖନ କରି

ପୁସ୍ତକ ପ୍ରକାଶନ ଦିଗରେ ବହୁମୂଲ୍ୟ ସମୟ ଓ ଶ୍ରମ ବିନିଯୋଗ କରିଥିବାରୁ ମୁଁ ସେହି ମହାଶୟଙ୍କ ନିକଟରେ ଚିରକୃତଜ୍ଞ ।

ଗୁରୁକଳ୍ପ ଗୃହୀତାବସର ଉଚ୍ଚପ୍ରାଥମିକ କୃଷ୍ଣ ପ୍ରଧାନ ଶିକ୍ଷକ ଶ୍ରୀଯୁକ୍ତ ଗୋଲୋକବିହାରୀ ମାନଧାତା ପାଣ୍ଡୁଲିପିଟିକୁ ପାଠ କରି ଆବଶ୍ୟକ ପରାମର୍ଶ ଦେଇଥିବାରୁ, ଏବଂ ମୋର ସହକର୍ମୀ ବନ୍ଧୁ ଶ୍ରୀ ଭାଗୀରଥି ପାଣ୍ଡ ଓ ଡକ୍ଟର ବୃନ୍ଦାବନ ମହାପାତ୍ର ସତତ ଉତ୍ସାହ ଓ ପ୍ରେରଣା ପ୍ରଦାନ କରିଥିବାରୁ ମୁଁ ସେମାନଙ୍କୁ ହାର୍ଦ୍ଦିକ କୃତଜ୍ଞତା ଜଣାଉଛି ।

ଶ୍ରୀଜୀଉଙ୍କର ଅଧୁନାତନ ମନ୍ଦିର ପ୍ରଶାସକ ଶ୍ରୀ ଗୋପୀନାଥ ରଥ ମୋତେ ଏହି ପବିତ୍ର କାର୍ଯ୍ୟରେ ଅବିରତ ପ୍ରୋତ୍ସାହନ ପ୍ରଦାନ କରି ପୁସ୍ତକ ରଚନା ଓ ପ୍ରକାଶନ ଦିଗରେ ଅନୁପ୍ରେରିତ କରିଥିବାରୁ ମୁଁ ତାଙ୍କୁ ଆନ୍ତରିକ ଧନ୍ୟବାଦ ଅର୍ପଣ କରୁଅଛି ।

ମୋର ପରମ ଶ୍ରଦ୍ଧାଭାଜନ ଅନୁଜଦ୍ୱୟ ଶ୍ରୀମାନ୍ ହୃଷୀକେଶ ଓ ଶ୍ରୀମାନ୍ ସତ୍ୟନାରାୟଣ ଏହି ପୁସ୍ତକ ପ୍ରଣୟନ କ୍ଷେତ୍ରରେ ବହୁ ତଥ୍ୟ ସଂଗ୍ରହ କାର୍ଯ୍ୟରେ ଅକୁଣ୍ଠ ସହାୟତା କରି ମୋତେ ଅନବରତ ପ୍ରେରଣା ଯୋଗାଇଥିବାରୁ ମୁଁ ସେ ଦୁହିଁଙ୍କର ଅଶେଷ ମଙ୍ଗଳ ଓ ଉତ୍ତରୋତ୍ତର ଉନ୍ନତି କାମନା କରୁଅଛି ।

ପରିଶେଷରେ ଯେଉଁ ପରମାରାଧ୍ୟ କରୁଣାସାଗର ଶ୍ରୀ ଶ୍ରୀ ଦଧିବାମନଜୀଉଙ୍କ ପ୍ରଚ୍ଛନ୍ନ ପ୍ରେରଣା ତଥା ଅନୁକମ୍ପାର ପ୍ରଭାବରେ ସମସ୍ତଙ୍କର ଅକୁଣ୍ଠ ସହାୟତା ଲାଭ କରି ଏହି କ୍ଷୁଦ୍ର କାବ୍ୟଟିକୁ ପ୍ରକାଶ କରିବାକୁ ସମର୍ଥ ହୋଇଛି ସେହି ମୋର ଇଷ୍ଟଦେବ ଶ୍ରୀ ଶ୍ରୀ ଦଧିବାମନଜୀଉଙ୍କ ପଦାରବିନ୍ଦରେ ଏହି ପୁସ୍ତକଟିକୁ ସବିନୟ ସମର୍ପଣ କରୁଅଛି । । ଇତି ଶମ୍ ।

ଭୁବନେଶ୍ୱର
ତା ୨ । ୭ । ୯୨ ରିଖ
ଶ୍ରୀଗୁଣ୍ଡିଚା

ବିନୀତ
ଲେଖକ
**ଶ୍ରୀ ମଦନମୋହନ ରଥ**

*Gajapati Maharaja*
*Dibyasingha Deb*

SRI NAHAR
PURI-752001

ତା ୭-୭-୯୨ ରିଖ

# ବାର୍ତ୍ତା

ଶ୍ରୀ ମଦନ ମୋହନ ରଥଙ୍କ ଦ୍ୱାରା ଲିଖିତ "ଶ୍ରୀ ଶ୍ରୀ ଦଧିବାମନ" ଶୀର୍ଷକ ପୁସ୍ତକଟି ମୋର ଦୃଷ୍ଟିକୁ ଆସିଛି । କଟକ ଜିଲ୍ଲା ସାଲେପୁର ଥାନା ଅନ୍ତର୍ଗତ କୋଇଲୋ ଗ୍ରାମ ସ୍ଥିତ ଶ୍ରୀ ଦଧିବାମନ ଦେବଙ୍କର ଅବସ୍ଥିତି, ମାହାତ୍ମ୍ୟ, ମନ୍ଦିର ନିର୍ମାଣ, ସେବାପୂଜା, ବିଧିବିଧାନ ଓ ପର୍ବପର୍ବାଣି ଉପରେ ଆଧାରିତ ୧୨ ଗୋଟି କବିତା ଏଥିରେ ସ୍ଥାନ ପାଇଛି । ଏହା ମାଧ୍ୟମରେ ଲେଖକ ଶ୍ରୀ ଦଧିବାମନ ଦେବଙ୍କ ବିଷୟରେ ଅନେକ ତଥ୍ୟ ଲୋକଲୋଚନକୁ ଆଣିବାରେ ସଫଳ ହୋଇଛନ୍ତି ବୋଲି ମୋର ବିଶ୍ୱାସ । ଏହାର ରଚନା ଶୈଳୀ ଅତ୍ୟନ୍ତ ସରଳ ଓ ସୁନ୍ଦର, ତେଣୁ ଏହା ଲୋକମାନଙ୍କଦ୍ୱାରା ବିଶେଷ ଆଦୃତ ହେବ ବୋଲି ମୋର ଧାରଣା ।

ଏହିପରି ଆଉ ଅନେକ ତଥ୍ୟ ସମ୍ବଳିତ ଉପାଦେୟ ପୁସ୍ତକ ରଚନା ଲାଗି ଶ୍ରୀ ଜଗନ୍ନାଥ ମହାପ୍ରଭୁ ତାଙ୍କୁ ଅଶେଷ ଉତ୍ସାହ ଓ ପ୍ରେରଣା ପ୍ରଦାନ କରନ୍ତୁ ବୋଲି ମୋର ନିବେଦନ ।

**ଦିବ୍ୟସିଂହ ଦେବ**

ନୃପତି




**ଶ୍ରୀ ଶରତ କୁମାର କର**
ମନ୍ତ୍ରୀ
କ୍ରୀଡ଼ା, ସଂସ୍କୃତି, ଯୁବ କଲ୍ୟାଣ ଓ ସୂଚନା ତଥା
ଲୋକ ସମ୍ପର୍କ, ଓଡ଼ିଶା


ଭୁବନେଶ୍ୱର
ତା ୭ । ୭ । ୯୬

## ଶୁଭେଚ୍ଛା ବାର୍ତ୍ତା

ଶ୍ରୀ ମଦନ ମୋହନ ରଥ ଯେ କି ବର୍ତ୍ତମାନ ରାଜଧାନୀର ଏକ ନମ୍ବର ଇଉନିଟ୍ ବାଳକ ହାଇସ୍କୁଲରେ ଶିକ୍ଷକ ଅଛନ୍ତି ତାଙ୍କର ଘର ଶ୍ରୀ ଦଧିବାମନ ଜୀଉଙ୍କର ଜନ୍ମସ୍ଥଳୀ କୋଇଲୋ । ଦଧିବାମନ ମନ୍ଦିର ଆନୁମାନିକ ୭୦୦ ବର୍ଷ ତଳର ମନ୍ଦିର । ଅସୁରେଶ୍ୱର ଗ୍ରାମ ଓ ପ୍ରଗଣା ଯେପରି ପୁରାତନ ତା ସହିତ ସାମିଲ ଗାଁ କୋଇଲୋ ମଧ୍ୟ ଦଧିବାମନ ଜୀଉଙ୍କ ପାଇଁ ବହୁ ପରିଚିତ । ଏତେ ପୁରାତନ ମନ୍ଦିର ଓ ସମୃଦ୍ଧ ପରମ୍ପରାର ଅଧିକାରୀ ହୋଇ ମଧ୍ୟ କାଳକ୍ରମେ ଏହା ବିସ୍ମୃତିଗର୍ଭକୁ ଯିବାକୁ ବସିଲାଣି ।

ଶ୍ରୀ ରଥ ଶିକ୍ଷକ ହିସାବରେ ନିଜର କର୍ତ୍ତବ୍ୟରତ ଥାଇ ମଧ୍ୟ ବହୁ ଶ୍ରମ କରି ମାଦଳା ପାଞ୍ଜି, ତାମ୍ର ପତ୍ର, ପୁରୁଣା କିମ୍ବଦନ୍ତୀ ସଂଗ୍ରହ କରି 'ଶ୍ରୀ ଶ୍ରୀ ଦଧିବାମନ' ନାମକ ଗୋଟିଏ କବିତା ପୁସ୍ତକ ପ୍ରଣୟନ କରିଥିବାରୁ ଧନ୍ୟବାଦର ପାତ୍ର । ଏହି ପୁସ୍ତକରେ ୧୧ଟି ସର୍ଗ ସ୍ଥାନ ପାଇଛି । ଏ ସବୁ ଗୁଡ଼ିକ ଖୁବ୍ ତଥ୍ୟଭିତ୍ତିକ ଓ ଉପାଦେୟ ।

ଏବେ ଦଧିବାମନ ମନ୍ଦିରର ମରାମତି କାର୍ଯ୍ୟ ଚାଲୁଅଛି । ଲୋକମାନଙ୍କ ମଧ୍ୟରେ ଜାଗରଣ ଆସିଛି । ଏହି ଅବସରରେ ଏହି ଐତିହାସିକ ତଥ୍ୟ ସମ୍ବଳିତ ରମଣୀୟ କବିତା ପୁସ୍ତକଟି ଖୁବ୍ ଆଦୃତ ହେବ ଏଥିରେ ସନ୍ଦେହ ନାହିଁ ।

ମୋତେ ଏହି ପୁସ୍ତକ ଉନ୍ମୋଚନ ପାଇଁ ଡକାଯାଇଥିଲା । ମୁଁ କାର୍ଯ୍ୟବ୍ୟସ୍ତତା ଯୋଗୁଁ ଏହି କାର୍ଯ୍ୟକ୍ରମରେ ଯୋଗ ଦେଇ ପାରୁ ନ ଥିଲେ ମଧ୍ୟ ଏଥିପାଇଁ ମୋର ସମ୍ପୂର୍ଣ୍ଣ ସଦିଚ୍ଛା ଜଣାଉଛି ।

**ଶରତ କୁମାର କର**



**ଓଁ ନମୋ ଭଗବତେ ଦଧିବାମନାୟ**

ମୁକ୍ତାଗୌରଂ ନବମଣିଲସଦ୍‌ଭୂଷଣଂ ଚନ୍ଦ୍ରସଂସ୍ଥଂ
ଭୃଙ୍ଗାକାରୈରଳକନବହୈଃ ଶୋଭିବକ୍ତ୍ରାରବିନ୍ଦମ୍, ।
ହସ୍ତାବ୍ଜାଭ୍ୟାଂ କନକକଳସଂ ଶୁଦ୍ଧତୋୟେନ ପୂର୍ଣ୍ଣଂ
ଦଧ୍ନାଢ୍ୟଂ ଚଂ କନକଚଷକଂ ଧାରୟନ୍ତଂ ଭଜାମଃ ॥

# ବନ୍ଦନା

ଜୟ ଶ୍ରୀଦଧିବାମନ
ଅଖିଳଜୀବନ,
ବାମନବିଗ୍ରହ ପ୍ରଭୁ
ପତିତପାବନ ॥ ୧ ॥

ଚିକ୍କଣ କଳା-ବଦନ
ଲାବଣ୍ୟ-ମୂରତି,
ଦାରୁ-କଳେବରେ ରାଜେ
ଅପରୂପ କାନ୍ତି ॥ ୨ ॥

ମସ୍ତକମଧ୍ୟେ ଝଟକେ
ସୁବର୍ଣ୍ଣର ଚିତା,
ସ୍କନ୍ଧପରେ ସୁଶୋଭିତ
ରଜତ-ପଇତା ॥ ୩ ॥

ବେନି ଭୁଜେ ଶଙ୍ଖ, ଚକ୍ର
ଅତି ମନୋହର,
ଦୁଃଖିଜନ ଦୁଃଖରାଶି
କରିବାକୁ ଦୂର ॥ ୪ ॥

ନାନା ରତ୍ନ ଅଳଙ୍କାରେ
ଶୋଭେ ଅଙ୍ଗମାନ,
ପୀତବସ୍ତ୍ରେ ବିମଣ୍ଡିତ
ଦିବ୍ୟ ଅପଘନ ॥ ୫ ॥

ରକ୍ତିମ ଅଧରଧାରେ
ମଧୁ-ସ୍ମିତହାସ,
ଚକାଡୋଳା-ଠାଣି କରେ
ଜନମନ ତୋଷ ॥ ୬ ॥

ଦର୍ଶନ ମାତ୍ରକେ ଚିତ୍ତ
ଭକ୍ତି-ବିଗଳିତ,
ଭକ୍ତର ନୟନ ହୁଏ
ଆନନ୍ଦାଶ୍ରୁସିକ୍ତ ॥ ୭ ॥

ପଦାରବିନ୍ଦେ ଆନନ୍ଦେ
ଥାଏ ଯାର ମତି;
ଭବମାୟା-ବନ୍ଧନରୁ
ପାଇଯାଏ ମୁକ୍ତି ॥ ୮ ॥

ପରଂବ୍ରହ୍ମ ପରାତ୍ପର
ସତ୍ୟ ସନାତନ,
ଅନାଦି ଅନନ୍ତ ପ୍ରଭୁ
ଅଜ୍ଞାନ୍ଧଭଞ୍ଜନ ॥ ୯ ॥

ଅଗତିର ଗତି ତୁମ୍ଭେ
ଅନାଥର ନାଥ,
ସର୍ବମୂଳାଧାର ହରି
ଜଗତବନ୍ଦିତ ॥ ୧୦ ॥

ବାର ମାସେ ତେର ଯାତ
କରିଛ ଭିଆଣ,
ଭକ୍ତମାନେ ରଚିବାକୁ
ଦିବ୍ୟ-ଲୀଳାମାନ ॥ ୧୧ ॥

ହୀନ ଦୀନ ଅକିଞ୍ଚନ
ମୁହିଁ ନିରାଶ୍ରୟ,
ତବ ପାଦେ ଆଶ୍ରା ନେଉଛି
ରକ୍ଷି ନିତି ଲୟ ॥ ୧୨ ॥

---

# ପ୍ରଥମ ସର୍ଗ

କଳାରେ କୁଶଳ ସଂସ୍କୃତି-ବହୁଳ
ସାଧନା-ସିଦ୍ଧି-ଭୁବନ,
ପୂତ ମନୋରମ ଶାନ୍ତାନନ୍ଦଧାମ
ମର୍ତ୍ତ୍ୟେ ବୈକୁଣ୍ଠ ସମାନ ॥ ୧ ॥

ଯାହାରେ ଭକତ- ଚିତ୍ତ ଆହ୍ଲାଦିତ
ନୃତ୍ୟ କରେ ଯା' ମାଧୁରୀ,
ବ୍ରହ୍ମ ସନାତନ- ପ୍ରସୂତି-ସଦନ
ଏହି ସେ ଉତ୍କଳପୁରୀ ॥ ୨ ॥

ପୀଠରୂପେ ଖ୍ୟାତ ପୁଣ୍ୟ ଚାରି କ୍ଷେତ୍ର
ଶଙ୍ଖ, ଚକ୍ର, ଗଦା, ପଦ୍ମ,
ସ୍ୱୟଂ ଦେବଦେବୀ ସେ ସ୍ଥଳେ ବିରାଜି
ସୃଜନ୍ତି ନିଜ ସଦ୍ମ ॥ ୩ ॥

ଏହିପରି କେତେ ପୁଣ୍ୟ ପୀଠସ୍ଥଳୀ
ଏବେ ବି ପୁରପଲ୍ଲୀରେ,
ଗଶ୍ମସ୍ଥାନ୍ କେ ବା ବିଲୀନ କେ ଅବା
କମ୍ବଦନ୍ତୀ ଆକାରରେ ॥ ୪ ॥

କେ ଅବା ବିଲୁପ୍ତି- ଗର୍ଭୁଁ ବାହାରିଛି
ସାଧୁ-ସନ୍ଥ-ଚେଷ୍ଟା-ଫଳେ,
ସ୍ୱକୀୟ ମହିମା ବିସ୍ତାରି କେନ୍ଦ୍ର ବା
ପୂଜନ୍ତି ଭକତମେଳେ ॥ ୫ ॥

ସର୍ବବ୍ୟାପି ସେହି ଇଚ୍ଛାମୟଙ୍କର
ଇଚ୍ଛାରେ ସବୁ ସମ୍ଭବେ,
ତାଙ୍କ ଇଚ୍ଛା ବିନା କାର୍ଯ୍ୟ-ସାଧନରେ
ସାଧ୍ୟ ନାହିଁ କା'ର ଲବେ ॥ ୬ ॥

କେତେ ଶହ ବର୍ଷ          ଗଲଣି ସେଦିନୁ
କିଏ ବା ପାରିବ କହି,
ଯାଇ ଅଛି କାଳ          ରହି ଅଛି କଥା
ଆଜଯାଏ ଶ୍ରୁତି ହୋଇ ॥ ୭ ॥

କଳିଯୁଗ-ଗଙ୍ଗା          ରୂପେ ଚିତ୍ରୋତ୍ପଳା
ସରଜିଲେ ନାରାୟଣ,
ପବିତ୍ର ସଲିଳେ          ଧୌତ କରିବାକୁ
ପାତକ-କଳୁଷ ପ୍ରାଣ ॥ ୮ ॥

ନଦୀ-ତଟ-ଦେଶ          ଥିଲା ନିକାଞ୍ଚନ
ଶ୍ୱାପଦରେ ପରିପୂର୍ଣ୍ଣ,
ଦିବାଲୋକେ ଜନେ          କରୁଥିଲେ ଭୟ
ଲଙ୍ଘିବା ପାଇଁ ସେ ବନ ॥ ୯ ॥

ଭୀତିପୂର୍ଣ୍ଣ ସେହି          ଘଞ୍ଚ ଅରଣ୍ୟରୁ
ଦୂରେ ଥିଲା ଜନବାସ,
ପ୍ରଗଣାର ନାମ          ଅସୁର + ଈଶ୍ୱର
କ୍ରମେ ହେଲା ପରକାଶ ॥ ୧୦ ॥

ବ୍ୟାପିଥିଲା ଏହି          ପ୍ରଗଣାର ସୀମା
ଅଷ୍ଟକ୍ରୋଶ ପରିମିତ,
ସେ ପ୍ରଗଣା-ମଧ୍ୟେ          ଅଷ୍ଟ ମହାଶମ୍ଭୁ
ହୁଅନ୍ତି ନିତ୍ୟ ପୂଜିତ ॥ ୧୧ ॥

ଆକସ୍ମିକ-ବନ୍ୟା          ପ୍ରଳୟ ରଚିଲା
ପୁଣ୍ୟତୋୟା ନଦୀ-ଅଙ୍କେ,
ଉଚ୍ଛୁଳାଇ ବକ୍ଷ          ଅନ୍ୟ ଶାଖା ଏକ
ସରଜିଲା ଭିନ୍ନ ବାଙ୍କେ ॥ ୧୨ ॥

କଳକଳ ନାଦେ          ଡାକିଲା ସେ ଶାଖା
ବିତରିବ ଜଳରାଶି,
ଉଲ୍ଲସିତ ପ୍ରାଣେ          ବାସକଲେ ଜନେ
ନଦୀ ବେନଣ୍ଠରେ ଆସି ॥ ୧୩ ॥

ସମୁଦ୍ର-ଜୁଆର ବହୁ ଦୂର ଯାଏ
ତା’ ଭିତରେ ଆସେ ପଶି,
ଲୁଣାଜଳରାଶି କରାଳ ପ୍ଲାବନେ
ଧନ, ଜନ ଢ଼ଏ ଗ୍ରାସି ॥ ୧୪ ॥

ସର୍ବଗ୍ରାସୀ ଜଳ ପ୍ରଳୟ-ପ୍ଲାବନେ
ହେବାରୁ ଜନେ ବ୍ୟଥିତ,
‘ଲୁଣାନଈ’—ନାମେ ହୋଇଲା ସେ ଖ୍ୟାତ
ସେ କାଳରୁ ଏ ଯାବତ ॥ ୧୫ ॥

---

# ଦ୍ୱିତୀୟ ସର୍ଗ

ନଦୀ-ଶଯ୍ୟାଠାରୁ କିଛୁମାତ୍ର ଦୂରେ
ଥିଲା ଏକ କ୍ଷୁଦ୍ର ଗ୍ରାମ,
ସେ ଗ୍ରାମରେ ବାସ କରି ଗୋପାଳକେ
ପାଳୁଥିଲେ ନିଜ କର୍ମ ॥ ୧ ॥

ଗୋ-ବତ୍ସା-ଚାରଣେ ନିତ୍ୟ ଗୋପାଳକେ
ଯାଉଥିଲେ ଘୋରବନେ,
ଧେନୁ, ବତ୍ସା ଚରି ଉଦର ଭରିଲେ
ବାହୁଡ଼ୁଥିଲେ ସଦନେ ॥ ୨ ॥

ଗାଆଁ ମୁଣ୍ଡଠାରୁ ନଈକୂଳ ଯାଏ
ବ୍ୟାପିଥିଲା ଘୋର ବନ,
ଠାବେ ଠାବେ ରହି ଶ୍ୟାମଳ ପ୍ରାନ୍ତର
ଦିଶୁଥିଲା ସୁଶୋଭନ ॥ ୩ ॥

ତୃଣଭୋଜୀ ପ୍ରାଣୀ ସେ ପ୍ରାନ୍ତରେ ଚରି
ଶୋଷରେ ହୋଇଲେ ଘାରି,
ବନ-ଉପକଣ୍ଠେ ଜଳାଶୟେ ପଶି
ପିଇଥାନ୍ତି ସ୍ୱଚ୍ଛ ବାରି ॥ ୪ ॥

କେତେକାଳୁ ବନ ମଧ୍ୟେ ଥିଲା ଏକ
ମନୋରମ ପୁଷ୍କରିଣୀ,
ନଦୀ-ବନ୍ୟା-ସ୍ରୋତେ ହୋଇ ତାହା ସୃଷ୍ଟ
ପୂର୍ଣ୍ଣ ଥାଏ ସଦା ପାଣି ॥ ୫ ॥

ଗୋ, ମହିଷ, ଛାଗ, ମେଷ ଆଦି ପଶୁ
ଭୋଜନାନ୍ତେ ଚଳି ଛଟ,
ମନବୋଧ କରି ପାଣି ପିଇସାରି
ଧରନ୍ତି ଫେରିବା-ବାଟ ॥ ୬ ॥

କାଳର କରାଳ- ଚକ୍ର-ଆବର୍ତ୍ତନେ
ପୁଷ୍କରିଣୀ ଜଳରାଶି,
ଦେବ ଦିବାକର କପଟରେ ଅବା
ସବୁ ନେଇଗଲେ ଶୋଷି ॥ ୭ ॥

ସୂର୍ଯ୍ୟଙ୍କ ତାପରେ ପଙ୍କ ଶୁଖିଯାଇ
ସୃଷ୍ଟି ହେଲା ଫାଟମାନ,
ଜଳଚର ପ୍ରାଣୀ ହୋଇ ଛଟପଟ
ବକଲେ ଛାଡ଼ିଲେ ପ୍ରାଣ ॥ ୮ ॥

ଅଭିନବ କଥା ଘଟିଗଲା ଦିନେ
ଅକସ୍ମାତ ଏ ସ୍ଥାନରେ,
ରହିଗଲା ସିନା ଚିରକାଳ ପାଇଁ
କମ୍ବଦନ୍ତୀ ଆକାରରେ ॥ ୯ ॥

ପ୍ରତିଦିନ ଗୋରୁ- ପଲରୁ ବାହାରି
ଦୁଧିଆଳି କାଳି ଗାଈ
ଜଗୁଆଳ-ଦୃଷ୍ଟି- ଅଲକ୍ଷ୍ୟରେ ଶୁଷ୍କ
ଜଳାଶୟେ ଥାଏ ଯାଇ ॥ ୧୦ ॥

ନୀରବ ନିଶ୍ଚଳ ରହି ଏକ ସ୍ଥାନେ
ଉଦ୍ଧାରୁ ଝରଇ କ୍ଷୀର,
ଝର ଝର କ୍ଷୀର ଝରି ତା' ଶରରୁ
ଫାଟେ ପଶେ ନିରନ୍ତର ॥ ୧୧ ॥

ନିତି ଯାଇ ଗାଈ ଆପେ କ୍ଷୀର ଦେଇ
ଲେଉଟି ଆସେ ପଲକୁ,
ନିଜ ଗୋଠ ସହ ବାହୁଡ଼େ ଘରକୁ
କେହି ନ ଜାଣେ ତାହାକୁ ॥ ୧୨ ॥

ପ୍ରତିଦିନ ଗାଈ ଦୁହିଁଲା ବେଳରେ
କ୍ଷୀର ନ ଝରଇ ତଳେ,
"ଗାଈଠାରୁ କ୍ଷୀର ହରିନିଏ କିଏ"
ବିସ୍ମୟେ ଗୋପାଳ ଭାଳେ ॥ ୧୩ ॥

ବଡ଼ ଆଚମ୍ବିତ କଥା ଏ ଘଟୁଛି
ଜଗୁଆଳ ପାଶେ ଡାକି,
ଏ ରହସ୍ୟ କଥା ପୁଚ୍ଛନ୍ତେ ତାହାକୁ
• ଜଗୁଆଳ ଗଲା ଶଙ୍କି ॥ ୧୪ ॥

କୁଷ୍ଠ-ବ୍ୟାଧି-ଗ୍ରସ୍ତ ଗାଈ-ଜଗୁଆଳ
ହସ୍ତପଦର ବିକୃତି,
ନିବାରଣ ଆଶେ ଦେବଦେବୀ କେତେ
ମନାସୁ ଥାଏ ସେ ନିତି ॥ ୧୫ ॥

ଗାଈ-ପଛେ ଯାଇ ଜଗୁଆଳ ବନେ
ଲୁଚି ଦୂରେ ହେଲା ଠିଆ,
ସ୍ୱ-ଚକ୍ଷୁରେ ଦେଖି ଘଟିବା ଘଟଣା
ବିସ୍ମୟେ ହେଲା ଗୁନିଆ ॥ ୧୬ ॥

କି ରହସ୍ୟ ଲୁଚି ରହିଛି ଏଥିରେ
ବୁଝି ନ ପାରିଲା ତିଳେ,
ଜାଣିବା ନିମିତ୍ତ ବଳିଲା ଆଗ୍ରହ
କି କରିବ ବସି ଭାଳେ ॥ ୧୭ ॥

କତିଛି କ୍ଷଣ ଭାବି ଉପାୟ ବାଛିର
ସନ୍ଦେହେ ସେ ସ୍ଥାନେ ଚଳି,
କୌତୂହଳୀ ହୋଇ ପାଞ୍ଚଣ ଅଗରେ
ପଙ୍କ ପକାଇଲା ଖୋଳି ॥ ୧୮ ॥

ପଙ୍କ ଖୋଳୁ ଖୋଳୁ ଅଦ୍ଭୁତ ସୁସ୍ଥତା
ଅଙ୍ଗେ ଅନୁଭବ କଲା,
ନିଜ ହସ୍ତପଦୁ ବ୍ୟାଧିଗ୍ରସ୍ତ ରୂପ
ସହସା ଉଭେଇଗଲା ॥ ୧୯ ॥

ମନରେ ଚିନ୍ତଇ, "କେଉଁ ଦେବଦେବୀ
କୃପା-ବାରି ବରଷିଲା,
କୁଷ୍ଠବ୍ୟାଧି-ରୂପ ଶତ୍ରୁରୁ ମୋହର
ଗୋପନରେ ହରିନେଲା" ॥ ୨୦ ॥

ଗାଆଁକୁ ଲେଉଟି କହିଲା ବଖାଣି
ଘଟିବା ଘଟଣାମାନ,
ଅଲୌକିକ କଥା ଶୁଣି ଆଚମ୍ବିତ
ହେଲେ ଗ୍ରାମବାସିଗଣ ॥ ୨୧ ॥

ହୋଇ ଏକମେଳ ଘଟଣା-ସ୍ଥଳକୁ
ବିସ୍ମୟେ କଲେ ଗମନ,
ଦେଖିଲେ ତହିଁ ମାଳ ଶାଳଗ୍ରାମ
ହେଲା ତାଙ୍କୁ ଦୃଶ୍ୟମାନ ॥ ୨୨ ॥

ଖୋଳ, କରତାଳ ନାମ-ସଂକୀର୍ତ୍ତନେ
ସେ ସ୍ଥାନ ଉଠିଲା ପୂରି,
ଭକ୍ତିଭାବେ ପୂଜା ଅରଚନା କଲେ
ସାଳଗ୍ରାମ-ନରନାରୀ ॥ ୨୩ ॥

ହରିବୋଲ ସଙ୍ଗେ ହୁଳହୁଳି ଶବ୍ଦେ
ସ୍ଥାନ ହେଲା ମୁଖରିତ,
ନାନା-ସ୍ଥାନୁ ଆସି ରୁଣ୍ଡ ହୋଇ ନିତି
ଦରଶନ କଲେ ଭକ୍ତ ॥ ୨୪ ॥

କୁଷ୍ଠବ୍ୟାଧିଗ୍ରସ୍ତ ଗାଈ-ଜଗୁଆଳ
ପୂର୍ବ ପୁଣ୍ୟ କର୍ମ ଫଳେ,
କଦାକାର-କରେ ଜଗତ-କର୍ତ୍ତାଙ୍କୁ
ସ୍ପର୍ଶିକଲା ଭାଗ୍ୟବଳେ ॥ ୨୫ ॥

ସହସା ତା' ବ୍ୟାଧି ତିରଦିନ ପାଇଁ
ଶରୀରୁ ହୋଇଲା ଦୂର,
ବିକଳାଙ୍ଗ ଦେହ ବଦଳି ଦିଶିଲା
ହୋଇ ସତେଜ ସୁନ୍ଦର ॥ ୨୬ ॥

ନିର୍ଜନ ସେ ସ୍ଥାନ ହେଲା ଜନପୂର୍ଣ୍ଣ
ବସତି ହୋଇଲା ଗଢ଼ା,
ସ୍ୱକର-ପରଶ ପାଇଁ ବସ୍ତିନାମ
ହୋଇଲା 'ସୁକର ପଡ଼ା' ॥ ୨୭ ॥

ପୋଖରୀରୁ ଦିଅଁ ବାହାରି ଥିବାରୁ
ନାମ ତା' 'ଦିଅଁପୋଖରୀ',
ପୋତି ହୋଇ ମାନ ଘାପଦଣ୍ଡି ଶୋଧେ
ପୂରୁବ ସ୍ମୃତିକୁ ଧରି ॥ ୨୮ ॥

# ତୃତୀୟ ସର୍ଗ

କେଉଁଠୁ କପର ଶ୍ରୀଳଗ୍ରାମ ଆସି
ରହିଥିଲେ ମାଟି ତଳେ,
ଏ ଗୂଢ଼ ରହସ୍ୟ ଲୁଚ ରହିଥିଲା
ଜନ-ମନ-ଅନ୍ତରାଳେ ॥ ୧ ॥

ଉପାସନା ପାଇଁ ମାନବହୃଦୟେ
ଆସିଲେ ସ୍ୱତଃ ଜାଗୃତ,
ପୂଜା ପାଇଁ ଥାପେ ନାନା ସ୍ଥାନେ କେତେ
ଦେବଦେବୀଙ୍କର ମୂର୍ତ୍ତି ॥ ୨ ॥

ଧର୍ମପ୍ରାଣ ବ୍ୟକ୍ତି କେବେ ହେଁ ଅଧର୍ମ
ପାଖ ତ ମାଡ଼ନ୍ତି ନାହିଁ,
ଧାର୍ମିକଙ୍କ ସଂଖ୍ୟା ସ୍ୱଳ୍ପ ହେଲେ ମଧ୍ୟ
ଧର୍ମକୁ ରଖନ୍ତି ସେହି ॥ ୩ ॥

ବହୁ ଦିନ ପୂର୍ବେ ମନ୍ଦିର ନଷ୍ଟ ସ୍ଥ
ରହିଥିଲା ଏହି ସ୍ଥାନେ,
କରୁଥିଲେ ପୂଜା କେହି ଧର୍ମବନ୍ତ
ଠାକୁରଙ୍କୁ ହୃଷ୍ଟ ମନେ ॥ ୪ ॥

ପୁଣ୍ୟ ବ୍ରହ୍ମମୟ ଶିଳା ମନ୍ଦିରରେ
ପୂଜା କର ଯଥାବିଧି,
ଭକ୍ତଗଣ ଆସି ମନ୍ଦିରେ ପ୍ରବେଶି
କରୁଥିଲେ ଆତ୍ମଶୁଦ୍ଧି ॥ ୫ ॥

ସର୍ବଗ୍ରାସୀ କାଳ-   କବଳେ ସବୁରି
ହୋଇଛି ଧ୍ୱଂସ ସାଧନ,
କ୍ଷୀରତ ରହିଛି   ଅତୀତ-ଗରଭେ
ନାହିଁ ତା'ର ଚିହ୍ନବର୍ଣ୍ଣ ॥ ୬ ॥

ବନ୍ୟା-ସ୍ରୋତେ ଅବା   ହୋଇଛି ବିଲୀନ
ଦୁର୍ବିପାକ ଭୂକମ୍ପନେ,
କଳା ପାହାଡ଼ର   ଘୃଣ୍ୟ ଆକ୍ରମଣେ
ଅଥବା ବିଧର୍ମୀ ରଣେ ॥ ୭ ॥

ଉତ୍ଥାନ ପତନ   ପ୍ରକୃତି-ରାଜ୍ୟରେ
ଅଟେ ସତ୍ୟ ଚିରନ୍ତନ,
ଏ ମହାସତ୍ୟକୁ   ଏଡ଼ାଇ ଦେବାକୁ
କିଏ ବା ହେବ ସୁଜନ ॥ ୮ ॥

ବନ୍ୟା-ସମୟରେ   କେବେ ସୁନିଶ୍ଚିତ
'ଲୁଣା' ଦୁଇକୂଳ ଖାଇ,
ପ୍ରଖର ପ୍ଲାବନେ   ବିଲୟ ଘଟିଲା
ପୁଣ୍ୟପୀଠ ଦେବଭୂଇଁ ॥ ୯ ॥

ସୃଷ୍ଟି କରିଗଲା   ଠାବେ ଠାବେ ଗଣ୍ଡ
ବ୍ୟାପିଯାଇ ବହୁ ଦୂର,
ବିଶାଳ ଆକାର   ଧରି ଦେଖାଗଲା
ସତେ କି ମହାସାଗର ॥ ୧୦ ॥

ଆକାରଟା ସିନା   ସାଗର-ସମାନ
ଜଳ କିନ୍ତୁ ସୁମଧୁର,
ତେଣୁ ଲୋକମୁଖେ   ନାମ ହେଲା ତା'ର
ପବନ 'ମଧୁସାଗର' ॥ ୧୧ ॥

ମଧୁସାଗରର ଉପକଣ୍ଠେ ଥିଲା
ଯେଉଁ ସୁରମ୍ୟ କାନନ,
ଧ୍ୱଂସ ପାଇ କ୍ରମେ ଧରିଅଛି ସ୍ମୃତି
ଆଜିକାର 'ମଧୁବନ' ॥ ୧୨ ॥

ସେ ମଧୁସାଗର ପୋତି ହୋଇ କ୍ରମେ
ରହିଲା କଣ୍ଢିଆମାନ,
ଜନପଦ ମଧ୍ୟେ ରହି ସ୍ଥାନେ ସ୍ଥାନେ
ଦେଉଛି ତା'ର ପ୍ରମାଣ ॥ ୧୩ ॥

ସୁକର ପଡ଼ାର ଦିଅଁ ପୋଖରୀ ଯେ
ଏହାର ଅଂଶବିଶେଷ,
ପୋତି ହୋଇ ଯହିଁ ଥିଲେ ଶାଳଗ୍ରାମ
ମନ୍ଦିର ପାଇଛି ଧ୍ୱଂସ ॥ ୧୪ ॥

ବିଭୁ-ଅନୁଗ୍ରହ ଲାଭକଲେ ପଙ୍ଗୁ
ଲଙ୍ଘି ଯାଏ ଗିରି ହେଲେ,
କରୁଣା ତାଙ୍କର ଲବେ ଊଣା ହେଲେ
ଚଳି ନ ପାରଇ ତିଳେ ॥ ୧୫ ॥

ପ୍ରଭୁଙ୍କ କରୁଣା- ବଳେ ଗାଣ୍ଠିଆଳ
ବ୍ୟାଧିରୁ ଲଭି ମୁକତି,
ଯୁଗ ଯୁଗ ପାଇଁ କଥା ରଖିଗଲା
ବଢ଼ିଲା ପ୍ରଭୁଙ୍କ ଖ୍ୟାତି ॥ ୧୬ ॥

ନିକଟସ୍ଥ ଗ୍ରାମ ମଧ୍ୟରୁ ଗୋପାଳେ
ନିତି ପୂଜା-ଦ୍ରବ୍ୟ ନେଇ,
ଲଙ୍ଘି ଘୋର ବନ ସହି ବହୁ କଷ୍ଟ
ପୂଜା କରୁଥିଲେ ଯାଇ ॥ ୧୭ ॥

ନିଶାର୍ଦ୍ଧରେ ଅରେ ଦେଖିଲେ ସପନ
ଗୋପାଳ-ମଣ୍ଡ଼ମଣି,
ବିପିନବିହାରୀ ତ୍ରିଭଙ୍ଗୀ ଠାଣିରେ
କହୁଛନ୍ତି ଧୀରେ ବାଣୀ ॥ ୧୮ ॥

"ଶ୍ରୀଭଦ୍ରେଶ୍ୱର- ମନ୍ଦିର-ବେଢ଼ାରୁ
ଛୁଡ଼ି ଅଳ୍ପ କିଛି ଦୂର,
ଯତନରେ ନେଇ ମୋ ଶାଳଗ୍ରାମକୁ
ମଣ୍ଡପେ ସ୍ଥାପନା କର ॥ ୧୯ ॥

ଯାନଯାତ୍ରା-ବିଧି- ବିଧାନ ସମସ୍ତ
ସମାରୋହେ ହେବ ମୋର,
ଏଥିପାଇଁ ଲୋଡ଼ା ଉପଚାର ସବୁ
ତୁରିତେ ବ୍ୟବସ୍ଥା କର" ॥ ୨୦ ॥

ଅନ୍ତର୍ଦ୍ଧାନ ହେଲେ ପ୍ରଭୁ ଅନ୍ଧକାରେ
ଗୋପାଳେ ଉଠିଲେ ଚେଇଁ,
ଅବିଳମ୍ବେ କାର୍ଯ୍ୟ ସାଧନେ ଲାଗିଲେ
ଦଳବଳ ସଙ୍ଗେ ନେଇ ॥ ୨୧ ॥

ଠାକୁରଙ୍କ ନାମ 'ଗୋପାଳ' ରଖାଇ
ମନ୍ଦିର କଲେ ତିଆରି,
ଗୋପାଳଜୀଉଙ୍କ ପାଇଁ ଗ୍ରାମ ନାମ
ହୋଇଲା ଗୋପାଳପୁର ॥ ୨୨ ॥

ଜମିବାଡ଼ି ଖଞ୍ଜି- ଦେଲେ ଜମିଦାର
ଠାକୁରଙ୍କ ସେବା ପାଇଁ,
ସେବାୟତମାନେ କାର୍ଯ୍ୟ ଆରମ୍ଭିଲେ
ନିତି ମନ୍ଦିରକୁ ଯାଇ ॥ ୨୩ ॥

ଜମିଦାର ମଧ୍ୟ ଦେଉଥିଲେ ଦୃଷ୍ଟି
ଯାନଯାତ୍ରା ନିମିତ୍ତ,
ବାର ମାସେ ତେର ଯାତ୍ରା ଫଳରେ
ପୀଠ ହେଲା ମୁଖରିତ ॥ ୨୪ ॥

ବସିଲା ବିପଣୀ ମନ୍ଦିର ପାଖରେ
ବିକାହେଲା ଭୋଗରାଗ,
ଭକ୍ତ ସମାଗମ କ୍ରମେ ବଢ଼ିଗଲା
ପାଇ ପ୍ରଭୁ-ଅନୁରାଗ ॥ ୨୫ ॥

ଭକ୍ତଙ୍କ ସୁବିଧା ପାଇଁ ପ୍ରାଚୀରରେ
ବେଢ଼ା ହେଲା ସୁରକ୍ଷିତ,
ବୃହତ ପୋଖରୀ ଖୋଳାହେବା ଯୋଗୁଁ
ଚାଲିଲା ଚନ୍ଦନଯାତ ॥ ୨୬ ॥

ଦୋଳପୂର୍ଣ୍ଣିମାରେ ଶ୍ରୀଜୀଉ ବିମାନେ
ଝୁଲିଲେ ଦୋଳବେଦୀରେ,
ନୂତନ ପଞ୍ଜିକା ଶ୍ରବଣ କରିଲେ
ଭକ୍ତମାନେ ଆଗ୍ରହରେ ॥ ୨୭ ॥

ଶ୍ରୀପଞ୍ଚମୀ ଦିନ ବିମାନରେ ପ୍ରଭୁ
ମନ୍ଦିରୁ ହୋଇ ବାହାର,
ପହିଲି ମଳୟ ପରଶ ଲଭନ୍ତି
କରି ବସନ୍ତ ବିହାର ॥ ୨୮ ॥

ଏହିପରି ସବୁ ଯାନଯାତ୍ରାମାନ
ହେଉଥିଲା ଆଡ଼ମ୍ବରେ,
ଭକ୍ତ ସମାଗମେ ପ୍ରଭୁଙ୍କ ମହିମା
ବ୍ୟାପିଥିଲା ବହୁ ଦୂରେ ॥ ୨୯ ॥

# ଚତୁର୍ଥ ସର୍ଗ

ଇଚ୍ଛାମୟ ହରି ନିଜେ ଇଚ୍ଛା କରି
କରିଲେ ମାୟା ବିସ୍ତାର,
ଭକ୍ତଙ୍କୁ ବରଜି ସେବା, ପୂଜା ତେଜି
ଅନ୍ୟତ୍ର ହେଲେ ବାହାର । ୧ ।

ପ୍ରଭୁଙ୍କର ଇଚ୍ଛା ପରିପୂର୍ଣ୍ଣ ହୁଏ
କାଳେ କାଳେ ଏହି ଭବେ,
କ୍ଷୁଦ୍ର ମାନବ କି ବୁଝିବ ସେ ତତ୍ତ୍ୱ
ନ ଥିଲେ କରୁଣା ଲବେ । ୨ ।

ନିଶାର୍ଦ୍ଧରେ ଦିନେ ପ୍ରଭୁ ଅନ୍ତର୍ଦ୍ଧାନ
ମନ୍ଦିର ମଧ୍ୟରୁ ହୋଇ,
ଅନ୍ୟତ୍ର ଚଳିଲେ ଭକତ ସମ୍ବିତ
ଜାଣି ନ ପାରିଲେ କେହି । ୩ ।

ଈଶଙ୍କ ପ୍ରସ୍ଥାନେ ମନ୍ଦିର ଓ ବେଢ଼ା
ହୋଇଲା ଅବହେଳିତ,
ମନ୍ଦିର ସହିତେ ବେଢ଼ା ଧ୍ୱଂସ ପାଇ
ସ୍ତୂପେ ହେଲା ପରିଣତ । ୪ ।

ସେ ସ୍ତୂପ ଉପରେ ନାନା ବୃକ୍ଷ ଉଠି
ହୋଇଛି ନିର୍ଜନ ସ୍ଥାନ,
ଦିନରେ ଶୃଗାଳ କରୁଛନ୍ତି ଲୀଳା
ପାଇ ସ୍ଥାନ ନିକାଞ୍ଚନ । ୫ ।

ଅକ୍ଷତ ସୁନ୍ଦର ଚନ୍ଦନ ପୋଖରୀ
ମଧ୍ୟେ ଥିବା ଦୀପଦଣ୍ଡି,
ଅଲୋଡ଼ା ଅଖୋଜା ଘାବେ ପୋତି ହୋଇ
ଉପରକୁ ଦିଶେ ମୁଣ୍ଡି । ୬ ।

ପୂର୍ବର ଚନ୍ଦନ ପୋଖରୀ ଯାହା କି
ପରିପୂର୍ଣ୍ଣ ଥିଲା ଜଳେ,
ନଉକାରେ ପ୍ରଭୁ ବିଜେ ହୋଇ ସ୍ୱପ
ଖେଳୁଥିଲେ କୋଳାହଳେ । ୭ ।

ଆଜି କିନ୍ତୁ ତାହା ଶୂକରମାନଙ୍କ
ହୋଇଅଛି ଲୀଳାସ୍ଥଳୀ,
ନାନାସ୍ଥାନୁ ଆସି ଶୂକରେ ଏକତ୍ର
ହେଉଛନ୍ତି ସେଠି ମେଳି । ୮ ।

ଝାଡ଼େଶ୍ୱରପୁର ପାଣ୍ଡିଆ—ଗ୍ରାମରେ
ଅଦ୍ୟାବଧି ନଷ୍ଟ କୀର୍ତ୍ତି,
ଭଗ୍ନା ବଂଶଧରେ ସୂଚାଇ ଦେଉଛି
ଅଷ୍ଟଚର ସେହି ସ୍ମୃତି । ୯ ।

'ଭଙ୍ଗା ଦେଉଳ'ର ନାମ ବହିଅଛି
ଏବେ ସେହି ପୂର୍ବ ଧାମ,
ଚନ୍ଦନ ପୋଖରୀ ଧରି ରଖିଅଛି
'ବଡ଼ପୋଖରୀ'ର ନାମ । ୧୦ ।

ପଚାରିଲେ ଗ୍ରାମ- ବାସୀଏ କରନ୍ତି
ପୂର୍ବ ମହିମା ବର୍ଣ୍ଣନ,
ଦିନେ ଏହିଠାରେ ପୂଜା ପାଉଥିଲେ
ଶ୍ରୀଜୀଉ 'ଦଧିବାମନ' । ୧୧ ।

ଗୋପନରେ ପ୍ରଭୁ ଚାଲିଗଲେ ଏଠୁ
ସମସ୍ତଙ୍କ ଅଗୋଚରେ,
ମହିମା ବିସ୍ତାରି ପୂଜା ପାଇବାକୁ
ରହି 'କୋଇଲ'—ଗ୍ରାମରେ । ୧୨ ।

କୋଇଲିରେ ପ୍ରଭୁ ନିଜ ଇଚ୍ଛାମତେ
ହେଲେ ଦାରୁ-କଳେବର,
ନବ ଯଉବନ ଦରଶନ କରି
ଭକତ ଚିତ୍ତ ବିହ୍ୱଳ । ୧୩ ।

ନୀଳାଚଳନାଥ ଶ୍ରୀଜଗନ୍ନାଥଙ୍କ
ବଡ଼ ପଣ୍ଡା ଭାଗ୍ୟବାନ,
କର୍ମବଳେ ବେନି କୁମରଙ୍କୁ ଲଭି
ନିଜେ ହୋଇଗଲେ ଧନ୍ୟ । ୧୪ ।

ପରମ ନୈଷ୍ଠିକ ଶ୍ରୀଜୀଉ ପୂଜକ
ଅଗ୍ରଜ ରାଧାମୋହନ,
ଶ୍ରୀଜୀଉ ସେବକ ପରମ ଭକତ
ଅନୁଜ ସିଂହନନ୍ଦନ । ୧୫ ।

ପ୍ରତିଦିନ ଯାଇ ମନ୍ଦିରେ ଦର୍ଶନ
କରନ୍ତି କଳାବଦନ,
ତୋଷ କରି ଚିତ୍ତ ଫେରନ୍ତି ଗୃହକୁ
ହରଷେ ସିଂହନନ୍ଦନ । ୧୬ ।

ଯଦି ଅକସ୍ମାତ ଯାଇ ନ ପାରନ୍ତି
ଦିଅଁ ଦରଶନ ଲାଗି,
ରହି ଅନାହାରେ ବ୍ୟାକୁଳ ଅନ୍ତରେ
ନେଇଥାନ୍ତି କ୍ଷମା ମାଗି । ୧୭ ।

କାଞ୍ଚି ରାଜାଠାରୁ ପାଇ ଅପମାନ
ପୁରୁଷୋତ୍ତମ ରାଜନ,
ପ୍ରତିଶୋଧ ନେବେ ସ୍ଥିର କରି ମନେ
କଲେ ଯୁଦ୍ଧ ଅଭିଯାନ । ୧୮ ।

ରଣେ ହାରିଯାଇ ଶରଣ ପଶିଲେ
ଶ୍ରୀଜୀଉ ପାଦପଦ୍ମରେ,
ଜୀଉଙ୍କ ଅଭୟ ପାଇ ଯୁଦ୍ଧଯାତ୍ରା
କଲେ ପର-ପ୍ରତ୍ୟୁଷର । ୧୯ ।

ଭକ୍ତ-ମନୋବାଞ୍ଛା ପରିପୂର୍ତ୍ତି ପାଇଁ
ଦେବ ଜଗନ୍ନାଥ ନିଜେ,
ବଡ଼ ଠାକୁରଙ୍କୁ ନିଜ ସଙ୍ଗେ ନେଇ
ଯୁଦ୍ଧକ୍ଷେତ୍ରେ ହେଲେ ବିଜେ ।୨୦।

କଳା, ଧଳା ଘୋଡ଼ା ଚଢ଼ି ବେନି ଭାଇ
ଚଳିଲେ ସୈନିକବେଶେ,
ପଥେ କ୍ଲାନ୍ତ ହୋଇ ପିଇଥିଲେ ଦହି
ମାଣିକଠାରୁ ହରଷେ ।୨୧।

ନିଜ ରତ୍ନମୁଦ୍ରି ମାଣିକକୁ ବନ୍ଧା
ଦେଇ କହିଲେ ଠାକୁର,
ପଛରେ ଆସନ୍ତି ରଜା, ତାଙ୍କଠାରୁ
ନେବ ପାଉଣା ତୁମ୍ଭର ।୨୨।

ଶୁଣି ଗଉଡ଼ୁଣୀ ମାଣିକ-ମୁଖରୁ
ରଜା ସକଳ ବୃତ୍ତାନ୍ତ,
ଦେଇ ତା' ପାଉଣା ରତ୍ନମୁଦ୍ରି ନେଇ
ସମରେ ଗଲେ ତ୍ୱରିତ ।୨୩।

'ମାଣିକପାଟଣା' ନାମରେ ନାମିତ
କଲେ ରଜା ସେହି ସ୍ଥାନ,
ଆଚନ୍ଦ୍ରତାରକ ନାମ ରହିଗଲା
ମାଣିକ ହୋଇଲା ଧନ୍ୟ ।୨୪।

ମନ୍ଦିରେ ସକାଳେ ଦେବପୂଜା ବେଳେ
ଚକ୍ଷୁରେ ରାଧାମୋହନ,
ନ ଦେଖି ଜୀଉଙ୍କ ପ୍ରତିଚ୍ଛବି ନେତ୍ରେ
ବିଷାଦେ ହେଲେ ମଗନ ।୨୫।

ସହସା ଘୋଷଣା କରିଲେ ମନ୍ଦିରେ
ପୂଜକ ରାଧାମୋହନ,
ବେନି ପ୍ରଭୁ ଏବେ ଶ୍ରୀମନ୍ଦିର ଛାଡ଼ି
ହୋଇଛନ୍ତି ଅନ୍ତର୍ଦ୍ଧାନ ।୨୬।

ଶ୍ରୀସିଂହନନ୍ଦନ ଅନାହାରେ ଦୁଃଖେ
ମନ୍ଦରେ ହେଲେ ଧାରଣା,
ଶ୍ରୀଉଙ୍କ ଚରଣେ ଗୁହାରି କରିଲେ
କାରଣ ହେବାକୁ ଜଣା । ୨୭ ।

ଭକ୍ତ-ମନୋରଥ ପୂରଣ ନମିତ୍ତ
ସ୍ୱୟଂ ପ୍ରଭୁ ନାରାୟଣ,
ଶୂନ୍ୟରୁ ସମ୍ବୋଧି କହିଲେ ଭକ୍ତଙ୍କୁ
ଘଟିବା ଘଟଣାମାନ । ୨୮ ।

ସତ ଅବା ମିଛ ଜାଣିବା ସକାଶେ
ନିଜ ମନମଧ୍ୟେ ଗ୍ରହି,
ଅନୁଚରବର୍ଗ ସଙ୍ଗେ ନେଇ ଗଲେ
ମାଣିକପାଟଣା ଚଳି । ୨୯ ।

ମାଣିକର ପାଶେ ହେଲେ ଉପଗତ
ଭକତ ସିଂହନନ୍ଦନ,
ଯେ' ଖଣ୍ଡରୁ ଦହି ଖାଇଥିଲେ ପ୍ରଭୁ
ସେ ଖଣ୍ଡ କଲେ ଦର୍ଶନ । ୩୦ ।

ବାମନ ମୂରତି ନବଘନକାନ୍ତି
ପ୍ରତିଚ୍ଛବି ଦେଖି ଘଟେ,
ମୂର୍ଛି ହୋଇ ସବା- ବେଶେ ଶ୍ରୀଗୁମ୍ଫରେ
ଗୁହାରି କଲେ ଉଚାଟେ । ୩୧ ।

"ପ୍ରଭୁ ଦୟାମୟ ମୋଠାରେ ସଦୟ
ହୁଅ ସବୁଦିନ ପାଇଁ,
ଏ ଦିବ୍ୟରୂପରେ ଦରଶନ ଦିଅ
ଇଚ୍ଛାମତେ ଭକ୍ତେ ହୋଇ" । ୩୨ ।

ଭକ୍ତ-ମନସ୍କାମ ପୂରଣ ନମିତ୍ତ
ଯୁଗେ ଯୁଗେ ଭଗବାନ,
ନାନାରୂପ ଧରି ମର୍ତ୍ତ୍ୟେ ଅବତରି
କରନ୍ତି ସେ ଲୀଳାମାନ । ୩୩ ।

# ପଞ୍ଚମ ସର୍ଗ

ଏକଦା ନିଶାନ୍ତେ ବ୍ରାହ୍ମମୁହୂର୍ତ୍ତରେ
ଧାର୍ମିକ ସିଂହନନ୍ଦନ,
କମନୀୟକାନ୍ତ ବାମନ ମୂରତି
ଦେଖି ହେଲେ ମୁହ୍ୟମାନ । ୧ ।

ନୀଳାଚଳନାଥ ପ୍ରଭୁ ଜଗନ୍ନାଥ
ଉଭା ହୋଇ ସନ୍ନିଧାନେ,
ଜାଗ୍ରତ କରାଇ ଅଭୟ ମୁଦ୍ରାରେ
କହନ୍ତି ମୃଦୁ ବଚନେ । ୨ ।

ଶିଶୁକ୍ଷେତ୍ରଠାରୁ ଏକମୁହାଁ ହୋଇ
ତୁଳସୀ-କ୍ଷେତ୍ରକୁ ଯିବୁ,
ମୋର ଜ୍ୟେଷ୍ଠ ଭ୍ରାତ ଶ୍ରୀବଳଦେବଙ୍କୁ
ଭକ୍ତିଭରେ ପ୍ରଣମିବୁ । ୩ ।

ପଥେ ହିଂସ୍ର ଜନ୍ତୁ ଦେଖି ମନମଧ୍ୟେ
ନ ବହିବୁ ତିଳେ ଭ୍ରାନ୍ତି,
ଦୁର୍ଗମ ସୁଦୂର ପଥ ଚାଲିଯିବୁ
ବିତାଇ ଦିବସ, ରାତି । ୪ ।

ସ୍ୱଇଚ୍ଛାରେ ପ୍ରଭୁ ସେ ସ୍ଥାନେ ଥିବାରୁ
ମହିମା ବଢ଼ିଲା ତାର,
ତେଣୁ ଲୋକମୁଖେ ସେହି ସ୍ଥାନ ନାମ
ହୋଇଗଲା ଇଚ୍ଛାପୁର । ୫ ।

ଅନତିଦୂରରେ ବିରାଜଇ ଗଡ଼
ନାମରେ ଲଳିତଗିରି,
ଗଢ଼ିଥିଲା ଗଡ଼ କଦର ଅସୁର
ଅନୁପମ ମନୋହାରୀ । ୬ ।

ସେ ଦାନବକୋପେ ମାନବ ସକଳ
ହୋଇ ଅତି ଭୟଭୀତ,
କାତରେ ଡାକିଲେ ପ୍ରଭୁ ହଳଧର
ତୁରିତେ ଫେଡ଼ ଆରତ । ୭ ।

କାତର ପ୍ରାର୍ଥନା ଶୁଣି ହଳପାଣି
ନିଜେ ଆବିର୍ଭୂତ ହୋଇ,
ପ୍ରତାପୀ କନ୍ଦସ୍ର ସଙ୍ଗେ ଯୁଝିଥିଲେ
ଆରତ ନାଶିବା ପାଇଁ । ୮ ।

ମୂଷଳ ଆଘାତେ କନ୍ଦସ୍ର-ଶରୀର
ହୋଇଗଲା ଛିନ୍ନଭିନ୍ନ,
ପରମ ଆଶ୍ୱସ୍ତି ଜନତା ଲଭିଲା
ତେଜନ୍ତେ ଅସୁର ପ୍ରାଣ । ୯ ।

ଅତି ସୁବିଶାଳ ଅସୁର ଶରୀର
ଯେ ସ୍ଥାନେ ହେଲା ପତିତ,
'କେନ୍ଦ୍ରାପଡ଼ା' ବୋଲି ସେ ସ୍ଥାନର ନାମ
ହେଲା ଲୋକମୁଖେ ଖ୍ୟାତ । ୧୦ ।

କେନ୍ଦ୍ରାପଡ଼ାଠାରୁ ପାଞ୍ଚ କୋଶ ଦୂରେ
ପଡ଼ିଲା ଅସୁର-ଶିର,
ଲୋକେ ସେହି ସ୍ଥାନ ନାମ ବାଛି ଦେଲେ
ପ୍ରଗଣା ଅସୁରେଶ୍ୱର । ୧୧ ।

ମୋ ଆଦେଶେ ଚଳ ତୁମ୍ଭେ ସେ ସ୍ଥଳକୁ
ଆଜ୍ଞାମାନ ମୋର ନେଇ,
ଗୋପାଳପୁରର ଗୋପାଳଜୀଉଙ୍କୁ
ଆଣ ଗୋପନରେ ତୁମ୍ଭେ । ୧୨ ।

ସେହି ଶାଳଗ୍ରାମ ମୋ ଅଂଶବିଶେଷ
ମନରେ ଆନ ନ ମଣି,
ନିଶାକାଳେ ସଙ୍ଗେ ଧରି ଚାଲିଥିବୁ
କେହି ନ ପାରିବେ ଜାଣି । ୧୩ ।

ସେ ସ୍ଥାନରୁ କ୍ରମେ ଦକ୍ଷିଣ ଦିଗକୁ
ହେବୁ ତୁମ୍ଭେ ଅଗ୍ରସର,
ସୁରମ୍ୟ ଅରଣ୍ୟ ପାର ହୋଇ ଯିବୁ
ମନ ତୋର କରି ସ୍ଥିର । ୧୪ ।

ଅସମୟେ ମୃଦୁ    ମଳୟ ପରଶେ
ତୋ' ଶତ୍ରୁ ହୋଇବ ତୋଷ,
ସେ ଅରଣ୍ୟଶୋଭା-    ମଳୟ-ପ୍ରଭାବେ
ଘୁଞ୍ଚିଯିବ ପଥ-କ୍ଳେଶ ।୧୫।

ଅସମୟେ ମଧୂ-    କାଳ ପରବେଶ
ହୋଇଥିବାରୁ ସେ ବନେ,
'ମଧୂବନ' ନାମ    ସାର୍ଥକ ହୋଇବ
ବନ-ନାମ ସବୁଦ୍ଧନେ ।୧୬।

କ୍ରମଶଃ ଆଗେଇ    ଚାଲିଥିବୁ ତୁମ୍ଭେ
ମହତ୍ତ୍ୱର ଲକ୍ଷ୍ୟ ନେଇ,
ଅରଣ୍ୟର ପୂର୍ବ-    ଅଂଶରେ ପହଞ୍ଚି
ବିଶ୍ରାମ କରିବୁ ଯାଇ ।୧୭।

କାଳକ୍ରମେ ଜନ-    ମୁଖେ ସେହି ସ୍ଥାନ
ହେବ ଅଣସରପୁର,
ସେହି ଗ୍ରାମଠାରୁ    ଅଳପ ଦୂରରେ
ଗଢ଼ା ହେବ ମୋ ମନ୍ଦିର ।୧୮।

ବିଶ୍ରାମାନ୍ତେ ପୁଣି    ଅରଣ୍ୟ ମଧ୍ୟରେ
ଆଗକୁ ମାଡ଼ି ଚାଲିବୁ,
ପବିତ୍ରସଲିଳା    'ଲୁଣା'-ନଦୀକୂଳ
ବାଲିପନ୍ତାରେ ମିଳିବୁ ।୧୯।

ଦୂରୁ ମଲ୍ଲୀବାସ    ଭାସି ଆସୁଥିବ
ଆଘ୍ରାଣେ ହୋଇ ହରଷ,
ଅଗ୍ରସର ହୋଇ    ମଲ୍ଲୀକା-କାନନେ
କ୍ରମେ ହେବୁ ପରବେଶ ।୨୦।

କୁଆଁ ତାରା ଯେବେ    ଉଇଁବ ଗଗନେ
ଶୁଭିବ କୋକିଳସ୍ୱନ,
ସିନ୍ଦୂର ଫାଟିବ    ରାତି ପାହିଯିବ
ଉଜ୍ଜ୍ୱଳ ପୂର୍ବ-ଗଗନ ।୨୧।

ସେ ବ୍ରାହ୍ମମୁହୂର୍ତ୍ତେ     ମୋ ଶାଳଗ୍ରାମକୁ
ସ୍ଥାପନା କରିବୁ ତହିଁ,
ସ୍ଥାନର ନାମକୁ     ରଖିବୁ 'କୋଇଲି'
ମାନ ମୋର ଆଜ୍ଞା ଏହି । ୨୨ ।

ମଲ୍ଲିକା-କାନନ     'ମଲ୍ଲୀପୁର' ନାମେ
କାଳକ୍ରମେ ହେବ ଖ୍ୟାତ,
ପ୍ରତିଷ୍ଠିତ ହୋଇ     'ରଘୁନାଥ' ଧନେ
ସେଠାରେ ହେବେ ପୂଜିତ । ୨୩ ।

ପୁଣ୍ୟ ବ୍ରହ୍ମମୟ     ମୋର ଶାଳଗ୍ରାମ
ଦାରୁ କଳେବରେ ରହି,
'ଶ୍ରୀଦଧିବାମନ'     ନାମରେ ନାମିତ
ହେବ ସେହି ସ୍ଥାନେ ଯାଇ । ୨୪ ।

ଯେ ରୂପ ଲାବଣ୍ୟ     ଦେଖି ହେଲୁ ମୁଗ୍ଧ
ମାଣିକ ଦଧି ଭାଣ୍ଡରେ,
ଅବିକଳ ସେହି     ରୂପ ମୁଁ ଧରିବି
ଦାରୁବ୍ରହ୍ମ କଳେବରେ । ୨୫ ।

ତୋ' ଭକ୍ତିରେ ପ୍ରୀତ     ହୋଇ ମୁଁ ସତତ
କହିଲି ଯେଉଁ ବିଧାନ,
ସେ ବିଧାନେ ଗଢ଼ି     ବିଗ୍ରହ ଥାପିବୁ
ମନ୍ଦିର କରି ନିର୍ମାଣ । ୨୬ ।

ମାଦଳା-ପାଞ୍ଜିରେ     ପୂଜା-ନୀତି ସବୁ
ହୋଇଛି ଯାହା ବର୍ଣ୍ଣନ,
ସେ ବିଧି-ବିଧାନେ     ପୂଜିବୁ ମୋତେ ତୁ
ନାମ ମୋ 'ଦଧିବାମନ' । ୨୭ ।

ମୋ' ପାଶେ ରହିବେ     ମଦନମୋହନ
ମହାଲକ୍ଷ୍ମୀ ଜଗନ୍ନାଥ,
ଚଳନ୍ତି ପ୍ରତିମା     ହୋଇ ଯଥାକାଳେ
ଭୁଲ୍ଲାଇବେ ଯାନ-ଯାତ । ୨୮ ।

ବାର ମାସେ ତେର          ଯାତ କରାଇବୁ,
ନିଯୋଗୀ ପଣ୍ଡା ସୁଆର,
ଛତିଶ-ପାଟକ,          ସେବାଯୁକ୍ତ ସେବା
କରୁଥିବେ ନିରନ୍ତର ।୨୯।

ବରଷକେ ଥରେ          ଚନ୍ଦନୋତ୍ସବ-ମାରେ
ଦେବସ୍ନାନ-ପୂର୍ଣ୍ଣିମାରେ,
ସ୍ନାନମଣ୍ଡପରେ          ସ୍ନାନ କରାଇବୁ
ଭକ୍ତମାନେ ଭକ୍ତିଭରେ ।୩୦।

ନିର୍ଭୟରେ କାର୍ଯ୍ୟ          କର ସମାପନ
ଅଭୟ ଦେଉଛି ମୁହିଁ,
ହେଳା କଲେ ଭେଳା          ବୁଡ଼ିବ ତୋହର
ଏଥିରେ ସନ୍ଦେହ ନାହିଁ ।୩୧।

ଜଗତ-ମଙ୍ଗଳ          ପାଇଁ ଜଗନ୍ନାଥ
ଏ ବାଣୀ ତାଙ୍କୁ ଶୁଣାଇ,
ଅଦୃଶ୍ୟ ହୋଇଲେ          କଥା ରହିଗଲା
କିମ୍ବଦନ୍ତୀ ରୂପ ନେଇ ।୩୨।

ନିଦ୍ରା ତେଜି ବଡ଼-          ପଣ୍ଡାଙ୍କ କୁମର
ପ୍ରାତଃକୃତ୍ୟମାନ ସାରି,
ଏକମୁହାଁ ହୋଇ          ଶ୍ରୀମନ୍ଦିରେ ଗଲେ
ପ୍ରଭୁକୃପା ଆଶା କରି ।୩୩।

ରତ୍ନବେଦୀ ପାଶେ          ହୋଇ ଧ୍ୟାନରତ
ଆଜ୍ଞାମାଳ ଭିକ୍ଷା କଲେ,
ପ୍ରଭୁ-ଆଜ୍ଞା ପାଇ          ଆନନ୍ଦିତ ମନେ
କେନ୍ଦ୍ରାପଡ଼ା ଯାତ୍ରା କଲେ ।୩୪।

ଶୁଭ କ୍ଷଣ ଦେଖି          ଅମୃତ ବେଳାରେ
ଭକତ ସିଂହନନ୍ଦନ,
ଏଡ଼ି ବାଧା, ବିଘ୍ନ          ଅଦ୍ଭୁତ ସାହସେ
ପ୍ରଭୁକାର୍ଯ୍ୟେ ଦେଲେ ମନ ।୩୫।

ପ୍ରଭୁଙ୍କ ଆଦେଶ ହୋଇଥିଲା ଯାହା
ମନରେ କରି ସ୍ମରଣ,
ଦୁର୍ଗମ ପଥରେ ଆଗେଇ ଚାଲିଲେ
ରଖି ଲକ୍ଷ୍ୟ ଦେଇ ଧାନ । ୩୬ ।

କେନ୍ଦ୍ରାପଡ଼ାଠାରେ ପହଞ୍ଚି ପ୍ରଥମେ
ଶ୍ରୀଜୀଉ ଦର୍ଶନ କଲେ,
ଗୋପାଳପୁରକୁ ଯାଇ ସଞ୍ଜ ଆଗୁଁ
ବେଢ଼ାରେ ଲୁଚି ରହିଲେ । ୩୭ ।

କ୍ରମେ ସନ୍ଧ୍ୟାଧୂପ ଭୋଗରାଗ ପରେ
ପଡ଼ିଲା ଯହୁଁ ପହଡ଼,
ସେବାଯୁକ୍ତମାନେ ନିଜ ଘରେ ଯାଇ
ଶୋଇଲେ ନିଦ ନିଘୋଡ଼ । ୩୮ ।

ଏକାଳେ ଶୁଭିଲା ମନ୍ଦିର ମଧ୍ୟରୁ
ମଧୁର ଗମ୍ଭୀର ସ୍ୱର,
"ଚାଲ ଯିବା ଏବେ ସଙ୍ଗତେ ତୋହର
ମନ ତୋ' ଊଣା ନ କର" । ୩୯ ।

ଫିଟିଲା ସହସା ମନ୍ଦିର-କବାଟ
ହେଲା ଜ୍ୟୋତି ପରକାଶ,
ରୁଣ୍ଟୁ-ଝୁଣ୍ଟୁ-ଝୁଣ୍ଟୁ ନୂପୁର-ଶବଦେ
ବାହାରିଲେ ଜଗଦୀଶ । ୪୦ ।

ଗନ୍ତବ୍ୟ ପଥରେ ଆଗେ ଆଗେ ଗଲେ
ଭକତ ସିଂହନନ୍ଦନ,
ଲଭିଥିବାରୁ ସେ ଦେବ-ଅନୁଗ୍ରହ
ଉଲ୍ଲସିତ ତା'ର ମନ । ୪୧ ।

ପଥ ଚାଲି ଚାଲି ପାହିଗଲା ରାତି
କୋକିଳ-କୂଜନ ଶୁଣି,
ଅଟକି ରହିଲେ ଆଗକୁ ନ ଚାଲି
ପ୍ରଭୁ ନିଜେ ଜାଣି ଜାଣି । ୪୨ ।

କୋଣକଳ ସ୍ୱରରୁ ହେଲା ସେହି ସ୍ଥାନ
'କୋଇଲ' ନାମରେ ଖ୍ୟାତ,
ନିଜ ଅବସ୍ଥାନ ପାଇଁ ବାଛିନେଲେ
ଭକତବତ୍ସଳ ନାଥ । ୪୩ ।

ପ୍ରଭୁଙ୍କ ଆଦେଶ ମାନି ସେହିଠାରେ
ଭକତ ସିଂହନନ୍ଦନ,
ଦାରୁରେ ପୂରାଇ ବ୍ରହ୍ମଶିଳା ଯତ୍ନେ
ଗଢ଼ିଲେ 'ଦଧିବାମନ' । ୪୪ ।

ଗୋଲୁଣି ପସରେ ଚକା ଚକା ଆଖି
ବସ୍ତ୍ରାବୃତ ପୁଣି ପାଟି,
ନାହିଁ ହସ୍ତ, ପଦ ବର୍ତ୍ତୁଳ ଶରୀର
ଭବମାୟା ଥାନ୍ତି କାଟି । ୪୫ ।

ଯେଉଁ ଭାବେ ଯିଏ ଚାହଇ ତାହାଙ୍କୁ
ଦିଶି ସେହି ପରକାର,
ପରମାତ୍ମା-ପ୍ରାପ୍ତି- ଧାରଣା ସୃଜନ୍ତି
ସ୍ୱରୂପ ମହାଭାବର । ୪୬ ।

ମହତର କାର୍ଯ୍ୟ କରିଲେ ସାଧନ
ଜୀବନ ହୁଅଇ ଧନ୍ୟ,
ବଇକୁଣ୍ଠ-ଧାମ ପ୍ରାପତ ହୁଅଇ
ଅର୍ଜିବାରୁ ମହାପୁଣ୍ୟ । ୪୭ ।

---

# ଷଷ୍ଠ ସର୍ଗ

ରାଜ୍ୟରେ ସେ କାଳେ          ବୃଦ୍ଧି ପାଇଥିଲା
ଜମିଦାରଙ୍କ ପ୍ରାଧାନ୍ୟ,
ମାନୁଥିଲେ ତାଙ୍କୁ          ଭକ୍ତିରେ ସକଳେ
ଦେଇ ଦେବତୁଲ୍ୟ ମାନ୍ୟ । ୧ ।

'ରାମସରଙ୍ଗ'-ଜମି-          ଦାରଙ୍କ ବଂଶଜ
ବରେଣ୍ୟ 'ରଘୁନନ୍ଦନ',
କାର୍ଯ୍ୟକଳାପରେ          ହୋଇଥିଲେ ସର୍ବ
ଜନଙ୍କ ଆସ୍ଥା-ଭାଜନ । ୨ ।

'କୋଇଲ' ଗ୍ରାମରେ          ନିର୍ମାଣ ସେ କଲେ
'ଦଧିବାମନ'-ଦେଉଳ,
ଯାହାଯାହା ଯାହା          ଖଞ୍ଜି ଯାଇଛନ୍ତି
ଚକ୍ଷୁଅନ୍ଧ କାଳ କାଳ । ୩ ।

ମୂଳ ମନ୍ଦିରର          ଦଧିନଉତିରେ
ନୀଳଚକ୍ରଟିଏ ଥାପି,
ତଥିପରେ ବାନା          ଉଡ଼ାଇବା ଫଳେ
ତରିଗଲେ ପାପୀ, ତାପୀ । ୪ ।

ମନ୍ଦିରଟି ଜଗ-          ମୋହନ ସାଥିରେ
ଆଦ୍ୟରୁ ହୋଇଛି ଗଢ଼ା,
କିନ୍ତୁ ଚଉପାଶ          ଥିଲା ତା' ମୁକୁଳା
ନ ଥିଲା ପାଚେରୀ ବେଢ଼ା । ୫ ।

ଯାହାଯାହା ସବୁ          ହେଉଥିଲା ବାହା
ବାହ୍ୟ ଖୋଲା ପଡ଼ିଆରେ,
ବେଢ଼ା ନ ଥିବାରୁ          ଇତର ପ୍ରାଣୀଏ
ପଶୁଥିଲେ ମନ୍ଦିରରେ । ୬ ।

ମନ୍ଦିର ଆଗରେ ଥିଲେ ମୁଖଶାଳା
ଦିଶେ କେଡ଼େ ମନୋହର,
ଅଧିକୁ ଅଧିକ ବୃଦ୍ଧି ପାଏ ଶୋଭା
ସୁନ୍ଦର ଦିଶେ ମନ୍ଦିର ।୭।

କାରଣଶନ୍ଧ ସାଲେ ଗୋପୀନାଥ ଗୁପ୍ତ
ଆସିଲେ ହୋଇ ନାଏବ,
ତାଙ୍କ ସଦ୍‌ଯୋଗେ କେତେ ନୂଆ କାମ
ସେଠାରେ ହେଲା ସମ୍ଭବ ।୮।

ଗୁପ୍ତଙ୍କ ଅମଳେ ତିଆରି ହୋଇଛି
ଯେଉଁ ସବୁ ଖଣ୍ଡିମାଳା,
ଜାଣିବା ନିମିତ୍ତ ରାଜ ବଂଶଧର
ଶିଳାରେ ହୋଇଛି ଖୋଳା ।୯।

ବନ୍ଧୁକୃପା ଲାଗି ସେବକ ଭବରେ
ସେବା ବ୍ରତ ଆଚରିଲେ,
ଜୀବନକୁ ତୁଚ୍ଛ ମଣି ମନ୍ଦିରର
ଉନ୍ନତି ସାଧନ କଲେ ।୧୦।

ସୁଦୃଢ଼ ପାଚେରି ଚଉଦିଗେ ଗଢ଼ି
ବେଢ଼ା କଲେ ସୁରକ୍ଷିତ,
ପାର୍ଶ୍ୱ-ମନ୍ଦିରରେ ଦେବତା ଥାପିଲେ
ବଢ଼ିଲା ବେଢ଼ା ମହତ୍ତ୍ୱ ।୧୧।

ବେଢ଼ା-ସମ୍ମୁଖରେ ଖୋଳାଇଲେ ବାମ୍ପୀ
ଜଳକଷ୍ଟ ଦୂର ହେଲା,
ପ୍ରସାଦ ରନ୍ଧନ ବ୍ୟବସ୍ଥା ନିମନ୍ତେ
ତୋଳିଲେ ରନ୍ଧନଶାଳା ।୧୨।

ଉତ୍ତର-ପଶ୍ଚିମେ ଅମାର ତୋଳିଲେ
ରହିଲା ଦିଅଁଙ୍କ ଧାନ,
ମନ୍ଦିର-ସମ୍ମୁଖେ ସ୍ନାନବେଦୀ ପାଇଁ
ମଣ୍ଡପ କଲେ ନିର୍ମାଣ ।୧୩।

ସ୍ନାନବେଦୀ ପାଖେ ତିଆର କରିଲେ
ଦଅଁଙ୍କ ଭଣ୍ଡାର-ଘର,
ଯାନଯାତ୍ରା ପାଇଁ ଲୋଡ଼ା ଯେତେ ଦ୍ରବ୍ୟ
ଏ ଭଣ୍ଡାରେ ହୁଏ ଠୁଳ । ୧୪ ।

ମନ୍ଦିରର ପୂର୍ବ ଉତ୍ତର କୋଣକୁ
ଯୋଡ଼ର୍ଦ୍ଧସ୍ତେ ବୃନ୍ଦାବଣ,
ରମଣୀମାନଙ୍କୁ ଶିକ୍ଷା ଦେଉଛନ୍ତି
ପତି-ଭକ୍ତି-ଅନୁରକ୍ତି । ୧୫ ।

ମନ୍ଦିର ଦକ୍ଷିଣ- ପଶ୍ଚିମେ ଅଛନ୍ତି
ପ୍ରତ୍ୟକ୍ଷ ପାତାଳଶମ୍ଭୁ,
ଅନାବୃଷ୍ଟି-ବେଳେ ଜଳଶାୟୀ କଲେ
ବରଷା ଝରଇ ନଭୁ । ୧୬ ।

ପାଖରେ ରହିଛି ବେଢ଼ାରୁ ପଦାକୁ
ଯିବାକୁ ଦକ୍ଷିଣ-ଦ୍ୱାର,
ସେହି ଦ୍ୱାରବାଟେ ପୋଖରୀରୁ ଜଳ
ଅଣାଯାଏ ମନ୍ଦିରର । ୧୭ ।

ଏହି ପୁଷ୍କରଣୀ ସୁଗଭୀର ହେବୁ
ସଦା ଜଳ ପୂରି ଥାଏ,
ତା'ର ତଟଦେଶ- ସୁରମ୍ୟ ଉଦ୍ୟାନ
ଦର୍ଶକ ମନକୁ ମୋହେ । ୧୮ ।

ରହିଛି ସୁନ୍ଦର ଝୁଲଣ-ମଣ୍ଡପ
ଦକ୍ଷିଣଦ୍ୱାରକୁ ଲଗି,
ଝୁଲଣ-ଯାତ୍ରାରେ ଝୁଲନ୍ତି ଶ୍ରୀଜୀଉ
ହୋଇ କେତେ ଅନୁରାଗୀ । ୧୯ ।

ମନ୍ଦିରର ପୂର୍ବ- ଦକ୍ଷିଣ-କୋଣରେ
ଅଛି ଯେଉଁ କୋଠାଘର,
ସେ ଗୃହେ ସାଇତା ହୋଇଥାଏ ନିତ୍ୟ
ଦୁଧ-ଦହିର ସମ୍ଭାର । ୨୦ ।

ମନ୍ଦର-ଗୋଠରେ ଥିଲେ ଯେତେ ଗାଈ
କେହି ନୁହେଁ ତାଙ୍କ ପର,
କାମଧେନୁ-ତୁଲ୍ୟ ଆବଶ୍ୟକ ବେଳେ
କ୍ଷୀର ଦେଉଥା'ନ୍ତି ତାଜ । ୨୧ ।

ଅତି ଉଚ୍ଚ ଏହି ଅଟ୍ଟାଳୀ ଘୁଡକୁ
ରହିଛି ସୋପାନଶ୍ରେଣୀ,
ବାହୁଡ଼ା-ଯାତ୍ରାରେ ତହିଁପରେ ବିଜେ
ହୋଇଥାନ୍ତି ଠାକୁରାଣୀ । ୨୨ ।

ଶ୍ରୀଜୀଉଙ୍କ-ଠାରେ ଅଭିମାନ କରି
ଲକ୍ଷ୍ମୀଠାକୁରାଣୀ ରାଗେ,
ସିଂହଦୁଆରର କିଳଣୀକୁ ଦେଇ
ରହିଥାଆନ୍ତି ସଜାଗେ । ୨୩ ।

ବଚନିକା-ଛଳେ କହନ୍ତି ଶ୍ରୀପ୍ରଭୁ
ଲକ୍ଷ୍ମୀଙ୍କ ମନ ଭୁଲାଇ,
"ତବ ମନଲାଖି ଆଣିଛି ମୁଁ ଶଜ
କିଳଣୀ ଢିଅ ଗୋ ! ଫେଇ" । ୨୪ ।

ସେ ଦିବ୍ୟ ଅଟ୍ଟାଳୀ ପାଶେ ରହିଛନ୍ତି
ସ୍ୱୟଂ କାଶୀ-ବିଶ୍ୱନାଥ,
ଭକ୍ତ କେହି ତାଙ୍କୁ ଡାକିଲେ ଆରତେ
ପୂରାନ୍ତି ସେ ମନୋରଥ । ୨୫ ।

ମନ୍ଦର ପଛରେ ପଶ୍ଚିମ ଦିଗରେ
ସମୁଚ୍ଚ ପ୍ରାଚୀର ଶ୍ରେଣୀ,
ସୀମା ନିର୍ଦ୍ଧାରଣ କରୁଛି ବେଢ଼ାର
କେତେ କାଳ ବିତିଲାଣି । ୨୬ ।

ମନ୍ଦର-ସମ୍ମୁଖେ ରହି ମୁଖଶାଳା
ଦେଖାଏ ତା' ଗୁରୁ ଠାଣି,
ଦୂରରୁ ଭକତ- ମାନଙ୍କ ମନକୁ
ସହଜରେ ନିଏ ଟାଣି । ୨୭ ।

ପତିତ-ତାରଣ ପତିତପାବନ
ମୁଖଶାଳା ମଧ୍ୟେ ରହି,
ଶଙ୍ଖ-ଚକ୍ର-ହସ୍ତେ ଉଭା ହୋଇଛନ୍ତି
ଆରତ ଖଣ୍ଡିବା ପାଇଁ । ୨୮ ।

ଅନ୍ୟ ପାଶେ ଉଭା ସଙ୍କଟ ମୋଚନ
ପ୍ରଭୁ-ଭକ୍ତ ହନୁମାନ,
ଅଭୟ ବଚନ ଭକତମାନଙ୍କୁ
ସଙ୍କଟୁ କରନ୍ତି ତ୍ରାଣ । ୨୯ ।

ଦଧିନଉତିର ଉପରେ ଉଡ଼ୁଛି
ଆରତ-ନାଶନ-ବାନା,
ଫର ଫର ଉଡ଼ି ଆରତ ନାଶୁଛି
ଭକ୍ତେ ଦେଇ ଆଶ୍ୱାସନା । ୩୦ ।

ମୁଖଶାଳା ସିଂହ- ଦ୍ୱାର ବେନି ପାର୍ଶ୍ୱେ
ଏକ ଯୋଡ଼ା ସିଂହ ରହି,
ମତ୍ତ ଦନ୍ତାହସ୍ତୀ ମସ୍ତକ ବଦାଇ
ସଦର୍ପେ ଅଛନ୍ତି ଗ୍ରହି । ୩୧ ।

ଦୋଳଗୋବିନ୍ଦଙ୍କ ଦୋଳଯାତ୍ରା ବେଳେ
ହେବାରୁ ବେପାର ମେଳା,
ମନ୍ଦିର-ସମ୍ମୁଖ ଖୋଲା ପ୍ରାଙ୍ଗଣରେ
ଦୋଳବେଦୀ ହେଲା ଗଢ଼ା । ୩୨ ।

---

# ସପ୍ତମ ସର୍ଗ

ଗୁଣ୍ଡିଚା-ମନ୍ଦିର ନିକଟେ ଶୋଭଇ
ସୁଦୀର୍ଘ ଏକ ପୋଖରୀ,
ମଦନମୋହନ ଚାପରେ ଖେଳନ୍ତି
ଏହିଠାରେ ବିଜେ କରି । ୧ ।

ଅକ୍ଷୟ-ତୃତୀୟା ଦିନରୁ ଆରମ୍ଭ
ପ୍ରଭୁଙ୍କ ଚନ୍ଦନଯାତ୍ରା,
ମହା ଆଡ଼ମ୍ବରେ ଏକୋଇଶ ଦିନେ
ଯାତ୍ରା ହୁଏ ସମାପତ । ୨ ।

ବିଶ୍ରାମ ଟୁଙ୍ଗିରେ ରହି କିଛି କ୍ଷଣ
ଯାଆନ୍ତି ନାବ ଉପରେ,
ପ୍ରଦକ୍ଷିଣ କରି ଧାପଦଣ୍ଡି ପ୍ରଭୁ
ଚାପ ଖେଳନ୍ତି ନାବରେ । ୩ ।

ଚନ୍ଦନଯାତ୍ରାକୁ ବିମାନରେ ପ୍ରଭୁ
ବିଜେ ହୋଇ ଗଲାବେଳେ,
ସାତୋଟି ମଣ୍ଡପେ ପୂଜା ପାଇଥାନ୍ତି
ଏହିପରି କାଳେ କାଳେ । ୪ ।

ସାତ ଜମିଦାର ଉତ୍ସାହେ ଲାଗନ୍ତି
ମନ୍ଦିରର ମାନ୍ତ ପାଇଁ,
ଜମିଦାରଙ୍କର ସମ୍ମାନ ନିମିତ୍ତ
ବିଧାନ ଯାଇଛି ରହି । ୫ ।

ଏ ପୁଣ୍ୟ ତିଥିରେ ଶ୍ରୀଜୀଉଙ୍କ ରଥ
ଗଢ଼ା ଅନୁକୂଳ ହୁଏ,
ଅଖ ପୂଜା ପରେ ମୁଖ୍ୟ କାରିଗର
ଅଖରେ ଚକ ଲଗାଏ । ୬ ।

ଜ୍ୟେଷ୍ଠ-ପୂର୍ଣ୍ଣିମାରେ ସ୍ନାନମଣ୍ଡପରେ
ବିଜେ ଶ୍ରୀଦଧିବାମନ,
ଶତଧୋସ୍ନଳା-ମାରେ ସ୍ନାନ କଲା ପରେ
ଶୋଭେ ବେଶ ଗଜାନନ । ୭ ।



ଶ୍ରୀ ଜୀଉଙ୍କ ଗଜାନନ ବେଶ

ଏହି ଦିନଠାରୁ ପଞ୍ଚଦଶ ଦିନ
ଅନବସରରେ ରହି,
ତାହାଙ୍କୁ ଦର୍ଶନ ନ ଦେଇ ଶ୍ରୀଜୀଉ
ନଭୃତେ ଯାଆନ୍ତି ଶୋଇ । ୮ ।

ମନ୍ଦିର-ସମ୍ମୁଖେ ଅଳ୍ପ ଦୂରେ ଅଛି
ଠାକୁରଙ୍କ ରଥଗଡ଼ା,
ସେଠି ରଥକାଠ ସୁରକ୍ଷିତ ଥାଏ
ହେବା ପାଇଁ ରଥ ଗଢ଼ା । ୯ ।

ସମ୍ମୁଖେ ପ୍ରଶସ୍ତ ରଥଦାଣ୍ଡ ବ୍ୟାପି
ରହିଅଛି ବହୁ ଦୂର,
ଦାଣ୍ଡର ଉଭୟ ପାଖେ ସେବାଯୁତ
ରହିଛନ୍ତି କରି ଘର । ୧୦ ।

ଶ୍ରୀଜୀଉଙ୍କ ରଥ ନାମ କପିଧ୍ୱଜ
ଧ୍ୱଜାରେ ବସିଛି କପି,
ଘର୍ଘର ନାଦରେ ଯେବେ ରଥ ଚଳେ
ଦାଣ୍ଡ ଯାଉଥାଏ କମ୍ପି । ୧୧ ।

ଷୋଳଗୋଟି ଚକ ରଥେ ଲାଗୁଥିଲା
କାହିଁ ଯେ କେଉଁ ଅମଳୁ,
ଦାଣ୍ଡ ସଙ୍କୁଚିତ ହେବାରୁ ବାରେଟି
ଚକ ଲାଗେ ପରକାଳୁ । ୧୨ ।

ଭକ୍ତମାନେ ରଥ ଦଉଡ଼ିକୁ ଟାଣି
ଆଗ୍ରହେ ନିଅନ୍ତି ଭିଡ଼ି,
ରଥର ଉପରେ ପୋଖତ ଡାହୁକେ
ଗୁଡ଼ୁଥାଏ ଘୋର ରଡ଼ି । ୧୩ ।

ହେରାପଞ୍ଚମୀରେ ମନେ ଦ୍ୱେଷ ବହି
ଲକ୍ଷ୍ମୀ ଯାଇ ପ୍ରଭୁଙ୍କର,
ରଥ ଭାଙ୍ଗି ଦେଖା ନ ଦେଇ ତାହାଙ୍କୁ
ଫେରନ୍ତି ନିଜ ମନ୍ଦିର । ୧୪ ।

ନବଦ୍ଧନ ଯାତ୍ରା ଶେଷରେ ଠାକୁର
ଆସନ୍ତି ଫେର ମନ୍ଦିରେ,
ଫେରିବା ବାଟରେ ପୋଡ଼ପିଠା ଖାଇ
ମାଉସୀମାଆଙ୍କ ଘରେ । ୧୫ ।

ଏକାଦଶୀ ଦିନ ରଥେ ସୁନାବେଶ
ହୁଅନ୍ତି ଦଧିବାମନ,
ରୂପଲାବଣ୍ୟରେ ମର୍ତ୍ତ୍ୟଭୁବନରେ
କେ ହେବ ତାଙ୍କ ସମାନ । ୧୬ ।

ଶ୍ରାବଣ ମାସରେ ଝୁଲଣ-ଯାତରା
ଦିଅଁଙ୍କର ପ୍ରତିବର୍ଷ,
ଶୁକ୍ଳ-ଦଶମୀରୁ ଅଧିବାସ ହୋଇ
ପୂର୍ଣ୍ଣିମାରେ ହୁଏ ଶେଷ । ୧୭ ।

ସମାନେ ଜୀଉଙ୍କ ଚଳନ୍ତି ପ୍ରତିମା
ମନ୍ଦିରରୁ ବିଜେ ହୋଇ,
ଝୁଲଣ-ମଣ୍ଡପେ ଝୁଲନ୍ତି ହରଷେ
ଭକତ ମନକୁ ମୋହି । ୧୮ ।

ଭାଦ୍ର-ଶୁକ୍ଳପକ୍ଷ ଦ୍ୱାଦଶୀ, ସୁନିଆ
ନବାଙ୍କ ବେଢ଼ା ବୁଲଇ,
ଭକ୍ତିପୂତଭାବେ ଶ୍ରୀଜୀଉଙ୍କଠାରେ
ନବାନ୍ନ ଲାଗି ହୁଅଇ । ୧୯ ।

ଆଶ୍ୱିନ ମାସରେ ଦଶହରା-ପର୍ବ
ମନ୍ଦିରେ ହୁଏ ପାଳନ,
ରାତିରେ ଜୀଉଙ୍କ ରମ୍ୟ ରାଜବେଶ
କରନ୍ତି ଭକ୍ତେ ଦର୍ଶନ । ୨୦ ।

ବ[illegible]-ପଡ଼ିଆ ମନ୍ଦିର ନିକଟୁ
ରହିଛି ଅଳପ ଦୂରେ,
ପ୍ରତିବର୍ଷ ତହିଁ ଯାତରା ହୁଅଇ
ବହୁଜନ-କୋଳାହଳେ । ୨୧ ।

ଯାତ୍ରା-ଶେଷରେ 'ଲଙ୍କାପୋଡ଼ି' ହୋଇ
ରାବଣ ହୁଏ ନିଧନ,
କାଳ କାଳ ଧରି ଚଳି ଆସୁଅଛି
ମନ୍ଦିରେ ଏହି ବିଧାନ । ୧୨ ।

ପବିତ୍ର କାର୍ତ୍ତିକେ ପ୍ରଭୁଙ୍କର ହୁଏ
ଶାରଦୀୟ ରାସ-ଯାତ୍ର,
ଫୁଲ-ରଥେ ବିଜେ ମଦନମୋହନ
ମହାଲକ୍ଷ୍ମୀଙ୍କ ସହିତ । ୧୩ ।

ରାସ ପୂର୍ଣ୍ଣିମାରେ ମନ୍ଦିରେ ଶ୍ରୀଜୀଉ
ପଦ୍ମବେଶ ଥା'ନ୍ତି ହୋଇ,
ଭକ୍ତମାନେ ଆସି କାହିଁ କେତେ ଦୂରୁ
ଗୁହାରି ଜଣାନ୍ତି ଯାଇ । ୧୪ ।

ମନ୍ଦିର-ବେଢ଼ାରେ ବୃନ୍ଦାବତ-ପାଶେ
ସନ୍ଧ୍ୟାରେ ଆକାଶଦୀପ,
ମହାପଞ୍ଚକରେ ପ୍ରତ୍ୟହ ଜଳଇ
ଦରଶନେ ହରେ ପାପ । ୧୫ ।

ମାର୍ଗଶିର ମାସ ଧନୁସଂକ୍ରାନ୍ତିରେ
ପହିଲି ଭୋଗ ହୁଅଇ,
ଧନୁମୁଆଁ ଦେଇ ଭକ୍ତିରେ ଭକତେ
ପୂଜନ୍ତି ଜଗତସାଇଁ । ୧୬ ।

ଦେବ ଅଭିଷେକ ମହୋତ୍ସବ ହୁଏ
ପୌଷମାସ-ପୂର୍ଣ୍ଣିମାରେ,
ଅଭିଷେକ ଦେଖି ଭକତେ ସନ୍ତୋଷେ
ବାହୁଡ଼ନ୍ତି ନିଜ ଘରେ । ୧୭ ।

ବସନ୍ତ ବଗିଚ୍ଚ ଗୁଣ୍ଡିଚ୍ଚ-ମନ୍ଦିରୁ
ରହିଛି ଅଳପ ଦୂରେ,
ତା' ଶୋଭା-ମାଧୁରୀ ଭକତ-ମନରୁ
ଶୋକ, ଦୁଃଖ ସବୁ ହରେ । ୧୮ ।

ମାଘ-ମାସ-ଶୁକ୍ଳ ପଞ୍ଚମୀ ତିଥିରେ
ଶ୍ରୀଜୀଉ ବିମାନରେ ଯାଇ,
ପହିଲ ମଳୟ ପରଶ ଲଭନ୍ତି
ଭକତ-ଗହଣେ ରହି । ୨୯ ।

ଶ୍ରୀପଞ୍ଚମୀ ଦିନ ହୁଅନ୍ତି ଶ୍ରୀଜୀଉ
କାଞ୍ଚୀ-ଅଭିଯାନ-ବେଶ,
ସେ ବେଶ ନିରେଖି ମନେ ପଡ଼ିଯାଏ
ପୂର୍ବ ଯଶ, ପଉରୁଷ । ୩୦ ।

ଫଗୁଣ ମାସରେ ଫଗୁ-ଦଶମୀରେ
ଭକତେ ହୋଇ ମିଳିତ,
ବସନ୍ତ-ବିହାର କରାଇ ଦିଅନ୍ତି
ହୁଅନ୍ତି ଫଗୁ-ଲେପିତ । ୩୧ ।

ଦୋଳପୂର୍ଣ୍ଣିମୀରେ ଦୋଳ-ମଣ୍ଡପରେ
ପ୍ରଭୁ ଶ୍ରୀଦୋଳଗୋବିନ୍ଦ,
ଝୁଲନ୍ତି ବିମାନେ ସେହି ଶୋଭା ଦେଖି
ମନରେ ଜାତ ଆନନ୍ଦ । ୩୨ ।

ଶ୍ରୀଜୀଉଙ୍କ ସମୀପେ ନବବର୍ଷ ପାଞ୍ଜି
ପଠିତ ହୁଏ ସେ ଦିନ,
ବରଷକ ରାଶି- ଚକ୍ର ଫଳାଫଳ
କରନ୍ତି ଜନେ ଶ୍ରବଣ । ୩୩ ।

ଦୋଳଯାତ୍ରାବେଳେ ମେଲଣ ନିମନ୍ତେ
ନିରୂପିତ ଅଛି ସ୍ଥାନ,
ଈଶ୍ୱରପୁର- ଗ୍ରାମ-ସମୀପରେ
ଦିଅଁଙ୍କ ପୂତ ଆସ୍ଥାନ । ୩୪ ।

ବିମାନରେ ବସି ଭୋଗ ଖାଇ ଖାଇ
ପ୍ରଭୁ ମଦନମୋହନ,
କ୍ରମେ ଅଗ୍ରସର ହୋଇ ମେଲଣକୁ
କରନ୍ତି ଧୀର ଗମନ । ୩୫ ।

ଥାନପତି ରୂପେ ଆସ୍ଥାନ ଜମାଇ
ଶୀର୍ଷରେ ପ୍ରଭୁ ରହନ୍ତି,
ନାନାସ୍ଥାନୁ ଆସି ଦିଅଁଙ୍କ ବିମାନ
ସେଠାରେ ରୁଣ୍ଡ ହୁଅନ୍ତି । ୩୬ ।

ବିଧି-ବିଧାନରେ ପୂଜା-ନଇବେଦ୍ୟ
ହୋଇଥାଏ ପ୍ରଭୁଙ୍କର,
ଭକ୍ତଙ୍କ ଗହଣେ ହୋରି-ଖେଳ ହୁଏ
ଭେଦାଭେଦ କରି ଦୂର । ୩୭ ।

ଚଇତ୍ର ମାସର ଶୁକ୍ଳନବମୀରେ
ବିଜେ ହୋଇ ରଘୁପତି,
ଶ୍ରୀଜୀଉଙ୍କ ଦାଣ୍ଡେ ଯାତ୍ରା କରିବାକୁ
ନେଉଥା'ନ୍ତି ଅନୁମତି । ୩୮ ।

ଶ୍ରୀଜୀଉଙ୍କଠାରୁ ପାଇ ଅନୁମତି
ହରଷରେ ରଘୁମଣି,
ପ୍ରତିବର୍ଷ ଆସି ଯାତ୍ରା କରୁଛନ୍ତି
କେତେକାଳ ବିତିଲାଣି । ୩୯ ।

ଚଇତ୍ର-ପୂର୍ଣ୍ଣିମୀ- ତିଥିରେ ହୁଅଇ
ପ୍ରଭୁଙ୍କ ଦାଣ୍ଡରେ ଯାତ,
ଦଳବଳ ସବୁ ସଙ୍ଗତରେ ନେଇ
ଆସିଥା'ନ୍ତି ସୀତାକାନ୍ତ । ୪୦ ।

ଶ୍ରୀଦଧିବାମନ ସେ ଦିନ ହୁଅନ୍ତି
ରାଜା ରାମଚନ୍ଦ୍ରବେଶ,
ପ୍ରଜାମାନଙ୍କର ଗୁହାରି ଶୁଣି ସେ
ହରନ୍ତି ସକଳ କ୍ଳେଶ । ୪୧ ।

ବାର ମାସେ ତେର ଯାତ୍ରା ପ୍ରଭୁଙ୍କର
ହୋଇଥାଏ ସମାହିତ,
ପୁଲକିତମନେ କରି ଉପଭୋଗ
ଭକତେ ହୁଅନ୍ତି ତୃପ୍ତ । ୪୨ ।

# ଅଷ୍ଟମ ସର୍ଗ

ମହାପ୍ରଭୁଙ୍କର ମହିମା ଅପାର
କିଏ ବା ବର୍ଣ୍ଣିବ ତାହା,
ଶରଧା-ଡୋରିରେ ଭକତଙ୍କୁ ବାନ୍ଧି
ହୋଇଥା'ନ୍ତି ସଦା ସାହା । ୧ ।

ସିଂହ-ଦୁଆରର ସମ୍ମୁଖରେ ଉଭା
ଯେଉଁ ସୁବିଶାଳ ଖମ୍ବ,
ଖଣ୍ଡିଏ ଶିଳାରେ ହୋଇଛି ନିର୍ମିତ
ନାମ ତା' ଅରୁଣ-ସ୍ତମ୍ଭ । ୨ ।

ସ୍ତମ୍ଭର ସ୍ଥାପନା- ମୂଳରେ ଗୋଟିଏ
ରହିଅଛି କିମ୍ବଦନ୍ତୀ,
କରିଛି ସ୍ଥାପନ ଧୀନ ଶ୍ୟାମଘନ
ହେଲେ ହେଁ ଅଧମଜାତି । ୩ ।

ମନସ୍କାମ ତା'ର ହେବାରୁ ପୂରଣ
ଉଲ୍ଲସିତ ହୋଇ ଅତି,
ସଞ୍ଚିତ ଧନର ସଦୁପଯୋଗରେ
ରଖିଲା ଅମର କୀର୍ତ୍ତି । ୪ ।

ଜାତିରେ ଧୀବର ବୃତ୍ତି ମାଛଧରା
ମନ ତା' ଅତି ନିର୍ମଳ,
କୀରତି ତାହାକୁ କରିଛି ଅମର
ମୃତ୍ୟୁଞ୍ଜୟ ଚିରକାଳ । ୫ ।

ସ୍ତମ୍ଭ ସ୍ଥାପି ଶ୍ୟାମ ବିଭୁଙ୍କୁ ଜଣାଏ,
"ବଂଶ ମୋର ଲୋପ ପାଉ,
ଏ କୀର୍ତ୍ତିରେ ଦାବୀ କରିବାକୁ କେହି
ଜଣେ ମୋ କୁଳେ ନ ରହୁ । ୬ ।

ସିଂହ-ଦୁଆରର ପ୍ରଶସ୍ତ କବାଟ
ପଡ଼େ ଯେତେବେଳେ ରାତ୍ରେ,
ଘଡ଼ ଘଡ଼ ଶବ୍ଦେ ଶୁଭେ ଯେଉଁ ରଡ଼
ଭୟ ସଞ୍ଚରଇ ଗାତ୍ରେ | ୭ |

ଏହି ଦୁଇ ଫାଳ ବିଶାଳ କବାଟ
ମନ୍ଦିରକୁ ଦେଇ ଦାନ,
ଅତି ଦୀନ ହୀନ ଶୂକର-ପାଳକ
ଜୀବନ କରିଛି ଧନ୍ୟ | ୮ |

ନିଜ ମନସ୍କାମ ପୂରଣ କାରଣେ
ବହୁ ଅର୍ଥ କରି ବ୍ୟୟ,
ଗୁବ୍‌ଜାକାର କାଂସ୍ୟ ଧାତବ ବସାଇ
ଗଢ଼ାଇ କପାଟଦ୍ୱୟ | ୯ |

ଦାନ କରିଗଲ ଶୂକର-ପାଳକ
ହୃଦୟ ତାହାର ସ୍ୱଚ୍ଛ,
ସୁମହତ କାର୍ଯ୍ୟ ସମ୍ପାଦନ କରି
ରଖିଗଲ ଆଦର୍ଶ ଉଚ୍ଚ | ୧୦ |

ରାଜାଙ୍କ ଅଧୀନେ ଥିଲେ ଜମିଦାର
ରାଜସ୍ୱ ଆଦାୟ ପାଇଁ,
ପ୍ରଜାଗଣଠାରୁ ଆଦାୟ ରାଜସ୍ୱ
ରାଜ ଙ୍କୁ ଥାଆନ୍ତି ଦେଇ | ୧୧ |

ସପ୍ତ ଜମିଦାର ଥିଲେ ସପ୍ତ ସ୍ଥାନେ
ମନ୍ଦିର ବୁଝିବା ପାଇଁ,
କଚେରୀ ବସାଇ କାର୍ଯ୍ୟ ତଦାରଖ
କରୁଥିଲେ ସେଠି ରହି | ୧୨ |

ଯାନଯାତ୍ରା-ଖର୍ଚ୍ଚ ତୁଲାଇବା ପାଇଁ
ଖଞ୍ଜା ଯାଇଥିଲା ଜମି,
ସେବାଯୁକ୍ତ ସେବା କରିବା ନିମିତ୍ତ
ଭୋଗନ୍ତି ନିଷ୍କର ଭୂମି ।୧୩।

ଛତିଶା ନିଯୋଗ ପ୍ରଜାଏ ହରଷେ
କରନ୍ତି ପ୍ରଭୁଙ୍କ କାର୍ଯ୍ୟ,
ଯାତ୍ରାବେଳେ ସବୁ ପାଉଣା ପାଆନ୍ତି
ଯାହା ତାଙ୍କ ପାଇଁ ଧାର୍ଯ୍ୟ ।୧୪।

ଜମିଦାରଙ୍କର ମନ, ଅର୍ଥ-ବଳେ
ମନ୍ଦିରେ ହେଲା ଉନ୍ନତି,
ଯଥାରୀତି ପୂର୍ବ ବିଧାନ ପ୍ରକାରେ
ଚଳୁଥିଲା ଦେବନୀତି ।୧୫।

କିନ୍ତୁ ଦିନ ଅନ୍ତେ ଶାସନେ ଆସିଲା
ଅଦ୍ଭୁତ ପରିବର୍ତ୍ତନ,
ଫିରଙ୍ଗୀ ଶାସକ ନୂତନ ଆଇନ
ଦେଶେ କଲେ ପ୍ରଣୟନ ।୧୬।

'ସୂର୍ଯ୍ୟାସ୍ତ ଆଇନ' ଯୋଡ଼ି ତାହା ସାଥେ
ଜମିକୁ କଲେ ନିଲାମ,
ଆଖି ଥାଇ ଅନ୍ଧ ହେଲେ ଜମିଦାର
ରାଜାଙ୍କର ଭାଗ୍ୟ ବାମ ।୧୭।

ବଙ୍ଗଦେଶେ ଜମି ନିଲାମ ଡାକିଲା
ଫିରଙ୍ଗୀ ଅତି କୌଶଳେ,
ଓଡ଼ିଶାର ଜମି ବଙ୍ଗ-ଜମିଦାର
ନେଲେ ସ୍ୱଳ୍ପ ଅର୍ଥ ବଳେ ।୧୮।

ବଧିବାମନଙ୍କ          ମନ୍ଦିର ସହିତ
ଯେତେ ସବୁ ଜମିବାଡ଼ି,
ରାଜାଙ୍କ ହାତରୁ          ବଙ୍ଗ-ଜମିଦାର
ହେଲେ ନେଲେ ସବୁ କାଢ଼ି । ୧୯ ।

ଛଅସ୍ତର ବାଟି          ସ୍ଥାବର ସମ୍ପତ୍ତି
ଥିଲା ଯାହା ପ୍ରଭୁଙ୍କର,
ମନ୍ଦିରରେ ଥିବା          ନଥିପତ୍ର ଦଏ
ପ୍ରକୃତ ହିସାବ ତାର । ୨୦ ।

ଏତେ ଭୂ-ସମ୍ପତ୍ତି          ମନ୍ଦିରର ଜାଣି
ଲୋଭେ ବଙ୍ଗ-ଜମିଦାର,
ନାମରେ ଧରି          ମନ୍ଦିର-ସମ୍ପତ୍ତି
ହସ୍ତେ ନେଲେ କାର୍ଯ୍ୟଭାର । ୨୧ ।

ପ୍ରତ୍ୟକ୍ଷ ଦାୟିତ୍ୱ          ବୁଝିବା ନିମିତ୍ତ
ଠାକୁରଙ୍କ ନୀତି, ପର୍ବ,
କଚେରୀ ବସାଇ          ପ୍ରତିନିଧି ରୂପେ
ନିଯୁକ୍ତ କଲେ 'ନାଏବ' । ୨୨ ।

କେତେ ଜମିଦାର          କେତେ ଯେ ନାଏବ
ଯାଇଛନ୍ତି, ଆସିଛନ୍ତି,
କିଏ କେଉଁ ମତେ          କର୍ତ୍ତବ୍ୟ ଭୁଲାଇ
ନୀରବ ଅରଜିଛନ୍ତି । ୨୩ ।

ଚକାଡୋଳା ବସି          ସବୁ ଦେଖେ ନେତ୍ରେ
କାହାକୁ କହେ ନ କିଛି,
ଭଲକୁ ତ ଭଲ          ମନ୍ଦକୁ ତ ମନ୍ଦ
ଫଳ ଦେଇଥାଏ ବାଛି । ୨୪ ।

# ନବମ ସର୍ଗ

ଆସିଥିଲେ ଜଣେ ନାଏବ ଅଞ୍ଚଳେ
ସ୍ୱଧର୍ମୀ ଯବନଜାତି,
ହାଇଦର ଅଲ୍ଲୀ- ନାମେ ପରିଚିତ
କଠୋର ତାଙ୍କର ମତି । ୧ ।

ସ୍ୱଧର୍ମୀ ହେଲେ ହେଁ ଠାକୁରଙ୍କ କାର୍ଯ୍ୟ
ବୁଝୁଥିଲେ ଭଲଭାବେ,
ଗୁପ୍ତଚରଦ୍ୱାରା ମନ୍ଦିର-ଖବର
ଆଣୁଥିଲେ ଅନୁଭବେ । ୨ ।

ପ୍ରତିଦିନ ଘୋଡ଼ା ଚଢ଼ି ଆସୁଥିଲେ
କାର୍ଯ୍ୟ ତଦାରଖ ପାଇଁ,
ମନ୍ଦିର ବାହାରେ ମଞ୍ଚାଉପରେ ବସି
ବେଢ଼ାକୁ ଦେଖନ୍ତି ଚାହିଁ । ୩ ।

କେଉଁଠାରେ ଯଦି କିଛି ଆବର୍ଜନା
ଦୃଷ୍ଟିରେ ପଡ଼େ ତାଙ୍କର,
ସଙ୍ଗେ ସଙ୍ଗେ ଡାକି ପାଳିଆକୁ ନଜେ
ଦଣ୍ଡିଥା'ନ୍ତି ବାରମ୍ବାର । ୪ ।

ଅଲ୍ଲୀ ନାଏବଙ୍କ କାଳେ ଜଳଘଡ଼ି
ସ୍ଥାପିତ ହେଲା ମନ୍ଦିରେ,
ଘଣ୍ଟା ବାଜୁଥିଲା ଲୋକେ ଜାଣିବାକୁ
ନିର୍ଦ୍ଦିଷ୍ଟ ସମୟାନ୍ତରେ । ୫ ।

ଜଳକୁଣ୍ଡେ ଘଡ଼ି ଜଗିବା ନିମିତ୍ତ
ଥିଲା ଯାହାର ଦାୟିତ୍ୱ,
କାଳିକ୍ରମେ କୁଣ୍ଡୀ- ବଂଶ ନାମରେ ସେ
ହୋଇଥିଲେ ପରିଚିତ । ୬ ।

ଯଥାକାଳେ ନୀତି ସମାପନ ପାଇଁ
ଥିଲା ନାଏବଙ୍କ ଧ୍ୟାନ,
ସେଥିପାଇଁ ମନେ ରଖିଛନ୍ତି ଲୋକେ
ବିତିଲାଣି କେତେ ଦିନ । ୭ ।

ସମସ୍ଥାନୁକ୍ରମେ  କେତେ ଜମିଦାର
ହେଲେ ଅଦଳ ବଦଳ,
ମନ୍ଦର-ଦାୟିତ୍ୱ  ବୁଝିଲେ ଏକଦା
ବଙ୍ଗୀୟ ବ୍ରାହ୍ମଣ-କୁଳ । ୮ ।

ଅଷ୍ଟାଦଶ ଶତ  ସତର ପୂର୍ବରୁ
ସମସ୍ତ ମନ୍ଦର ଭାର,
ଶ୍ରୀରାଧାମାଧବ  ଗ୍ରହଣ କରିଲେ
ଆଗ ହୋଇ ଜମିଦାର । ୯ ।

କାଳକ୍ରମେ ତାଙ୍କ  ବଂଶଧରଗଣ
ଉତ୍ତରାଧିକାରୀ ହୋଇ,
ଊନବିଂଶ ଶତ  ସପ୍ତତ୍ରିଂଶ ଯାଏ
କାର୍ଯ୍ୟ ନେଇଥିଲେ ବାନ୍ଧି । ୧୦ ।

ସର୍ବଶେଷ ଜମି-  ଦାର ସେ ବଂଶର
ପ୍ରମୋଦା ଦେବୀଙ୍କ ନାମ,
ରହିଛି ଅଦ୍ୟାପି  ଶ୍ରୀଜୀଉ-ମନ୍ଦରେ
ସେହିପରି ଅମଳାନ । ୧୧ ।

ପ୍ରମୋଦା ଦେବୀଙ୍କ  ଅନ୍ତେ ପୋଷ୍ୟପୁତ୍ର
ବାନାର୍ଜୀ ରଜତକାନ୍ତ,
ଦଧିବାମନଙ୍କ  ଜମିଦାର ରୂପେ
କାର୍ଯ୍ୟରେ ହେଲେ ନିଯୁକ୍ତ । ୧୨ ।

ଧନାଢ୍ୟପ୍ରବର  ସନ୍ତାନଭାବରେ
ବିଳାସରେ ଥିଲେ ରହି,
ତେଣୁ ସେ ମନ୍ଦର  କଥା ବୁଝିବାରେ
ତୀକ୍ଷ୍ଣ ଦୃଷ୍ଟି ଦେଲେ ନାହିଁ । ୧୩ ।

ରଜତଙ୍କ ବେଳୁ  ଜମିଦାରୀ-ପ୍ରଥା
ଦେଖୁ ଯାଇଥିଲା ଉଠି,
ନାମକୁ ମାତ୍ର ସେ  ଜମିଦାର ସାଜି
ରହିଥିଲେ ଖାଲି ଯେଠି । ୧୪ ।

ଏ ବଂଶରେ ଥିଲେ ଶ୍ରୀରାମଗୋପାଳ
ଖ୍ୟାତନାମା ଜମିଦାର,
ଜୟକାଳୀ ସହ- ଧର୍ମିଣୀ ତାଙ୍କର
ଥିଲେ ଜଣେ କଳାକାର । ୧୫ ।

ବଙ୍ଗଦେଶେ ରହି ରାଧାଶ୍ୟାମ ପଣ୍ଡା
ଓଡ଼ିଶାବାସୀ ବ୍ରାହ୍ମଣ,
ମଞ୍ଚ ନାଟକରେ ଦକ୍ଷତାର ସହ
ସୁନାମ କଲେ ଅର୍ଜ୍ଜନ । ୧୬ ।

ଓଡ଼ିଆ ଭଉଣୀ ଭାଇଙ୍କୁ ଏକତ୍ର
କରି ଦୂର ବଙ୍ଗଦେଶେ,
'ଜୟକାଳୀ' ନାମେ ଯାତ୍ରାଦଳ ଗଢ଼ି
ସୁନାମ ଅର୍ଜ୍ଜିଲେ ଶେଷେ । ୧୭ ।

ଜୟକାଳୀଙ୍କର ଭୂୟସୀ ପ୍ରଶଂସା
ଜମିଦାର-ପାଶେ ଗାଇ,
ବିଶ୍ୱାସ ଜନ୍ମାଇ ବନ୍ଧୁତା-ଛଳରେ
ମନକୁ ନେଲେ ମନାଇ । ୧୮ ।

ଜମିଦାର-ବଂଶେ ପଣ୍ଡାଙ୍କ ଆସନ
ରହିଗଲା ବହୁ ଉଚ୍ଚେ,
ଶ୍ରଦ୍ଧା-ଭାଜନ ସେ ହୋଇଲେ ଅକ୍ଳେଶେ
ଧାଇଁ ଜମିଦାର-ପଛେ । ୧୯ ।

କଲେ ନିବେଦନ ମନ୍ଦିର ବୁଝିବା
ନିମିତ୍ତ ରଜତକାନ୍ତେ,
ମନ୍ଦିର ଦାୟିତ୍ୱ ଦେଲେ ଜମିଦାର
ରାଧାଶ୍ୟାମେ ଅକସ୍ମାତେ । ୨୦ ।

ଊନବିଂଶ ଶତ ଏକତ୍ରିଂଶ ସାଲେ
ଇଜାରଦାର ସେ ହୋଇ
ବଙ୍ଗଳାଦେଶରୁ ପାଇଲେ ନିଯୁକ୍ତି
ମନ୍ଦିର ବୁଝିବା ପାଇଁ । ୨୧ ।

ଯାହା-ମାଧ୍ୟମରେ ବହୁ ଅର୍ଥ ଆଣି
ବଢ଼ିଥିଲ ତାଙ୍କ ଖ୍ୟାତି,
ସାଧାରଣ ଲୋକ ଦେଖିଲେ ତାହାଙ୍କୁ
ମନେ ଆଣୁଥିଲେ ପ୍ରୀତି ।୨୨।

'ବାବୁ' ବୋଲି ତାଙ୍କୁ ଡାକଲେ ସମସ୍ତେ
ନାମ ନ ଧରିଲେ କେହି,
ନ୍ୟାୟ-ନଶାପରେ ତାଙ୍କୁ ନ ଡାକଲେ
ନଶାପ ଡେନାଶ୍ୱଲ କହିଁ ।୨୩।

ପଣ୍ଡାଙ୍କ କାର୍ଯ୍ୟରେ ସନ୍ତୋଷ ପ୍ରକାଶି
ଜମିଦାର ବାହାଦୁର,
ଊନବିଂଶ ଶତ ଶତାଷ୍ଟିଶଶରେ
ଦେଲେ ପୂର୍ଣ୍ଣ ଅଧିକାର ।୨୪।

ଊନବିଂଶ ଶତ ଚେୟାଳିଶ ସାଲେ
ସାହେବ ସି. ଜି. ନାପ୍ପାର,
କମିଶନ ରୂପେ କରିଲେ ଘୋଷଣା
ମନ୍ଦିର ସମସ୍ତଙ୍କର ।୨୫।

ମନ୍ଦିର ଉପରୁ ଜମିଦାରଙ୍କର
ମାଲିକାନା ସିନା ଗଲା,
ରାଧାଶ୍ୟାମଙ୍କର ତତ୍ତ୍ୱାବଧାନରେ
ହଅଁ-ମାତ୍ର ରହିଥିଲ ।୨୬।

ମନ୍ଦିର ମାର୍ଫତ- ଦାର ହୋଇ ପଣ୍ଡା
ନେଇ ମନ୍ଦିରର ତତ୍ତ୍ୱ,
ମନ୍ଦିରରେ ଥିବା ଭଙ୍ଗାଭୁଟା ଅଂଶ
କଲେ କ୍ରମେ ମରାମତ ।୨୭।

ଲୁଣା-ନଦୀ ପାରି 'କୁଲଗାଁ ଈଶାଣୋ'
ଥିଲ ପଣ୍ଡାଙ୍କର ଘର,
କୋଇଲୋକୁ ଆସି ଆସ୍ଥାନ ଥାପିଲେ
ବୁଝିବା ପାଇଁ ମନ୍ଦିର ।୨୮।

'କୋଇଳେ' ଗ୍ରାମର ଉଅଦାଣ୍ଡ ପାଖେ
ଗୋପାଳଜୀଉଙ୍କ ମଠ
ସାଧୁବାବା ଜଣେ ରହି ମଠମଧ୍ୟେ
କରୁଥିଲେ ପୂଜା ପାଠ । ୨୯ ।

କାଳକ୍ରମେ ମଠ ଲୋପ ପାଇଗଲା
ଜୀଉ ରହିଲେ ଅପୂଜା,
ବନମାଳୀ ପଣ୍ଡା ନାମେ ସେବାୟତ
ନେଇ ଘରେ କଲେ ପୂଜା । ୩୦ ।

ସାଧୁବାବା ଗଲେ ମଠ ମଧ୍ୟ ଗଲା
ଡିହଖଣ୍ଡ ଥିଲା ଖାଲି,
ସେ ଡିହେ ବଙ୍ଗଳା କଲେ ରାଧାଶ୍ୟାମ
ଧାଡ଼ି ଧାଡ଼ି ଘର ଛାଳି । ୩୧ ।

ଇନ୍ଦୁମଣି ଥିଲେ ଦଧିବାମନଙ୍କ
ମନ୍ଦିରର ଦେବଦାସୀ,
ପ୍ରତିଦିନ ବଡ଼- ସିଂହାର ସମୟେ
ନୃତ୍ୟ କରୁଥିଲେ ଆସି । ୩୨ ।

ସର୍ବଶୋଭାଯୁକ୍ତା 'ଇନ୍ଦୁ'ଙ୍କ ଦୁହିତା
ନାମ କୁମୁଦିନୀ ବାଈ,
ସହଚରୀ ରୂପେ ପଣ୍ଡାଙ୍କ ସହିତେ
ବଙ୍ଗଳାରେ ଥିଲେ ରହି । ୩୩ ।

ବାବୁଆଣୀ ସାଜ ପ୍ରତି ପଦେ ପଦେ
ବାବୁଙ୍କ ସହିତ ମିଶି,
'ଜୀଉ'ଙ୍କର ଯାନ- ଯାତ୍ରା ବୁଝୁଥିଲେ
ନିଜେ ମନ୍ଦିରକୁ ଆସି । ୩୪ ।

ପଣ୍ଡାଙ୍କ ଶାସନ- ମଧ୍ୟାହ୍ନ ପର୍ଯ୍ୟନ୍ତ
ଦେବନୀତି ନିର୍ବିଘ୍ନରେ
ଯାନଯାତ୍ରା ସବୁ ହେଉଥିଲା ଯାହା
ଆଡ଼ମ୍ବର ସହକାରେ । ୩୫ ।

---

# ଦଶମ ସର୍ଗ

ଜମିଦାରୀ ପ୍ରଥା ଉଚ୍ଛେଦ ଆଇନ
ଦେଶେ କାର୍ଯ୍ୟକାରୀ ହେଲା,
ଢାଅଁଙ୍କର ବହୁ ଜମି ଯିବା ଫଳେ
ଭାରି ଅଭାବ ପଡ଼ିଲା ।୧।

ନିଜ ନାମେ ଜମି କଲେ ସେବାୟତ
ନ୍ୟାଯ୍ୟ ପାଉଣା ନ ଦେଇ,
ସରକାରେ ଦେଇ ଜମିର ଖଜଣା
ପାଉତି ନେଲେ କଟାଇ ।୨।

ମାଲିକାନା ସ୍ୱତ୍ୱ ବଳରେ କେତେକ
ଜମି ଦେଲେ ବିକ୍ରୀ କରି,
ଅବଶିଷ୍ଟ ଜମି ଅମଳ ଫସଲ
ଥୋକେ ନେଲେ ଫାଙ୍କି ମାରି ।୩।

କ୍ରମେ କ୍ରମେ ଧର୍ମ- ଭାବ କମିଗଲା
ଲୋକମାନଙ୍କ ମନରୁ,
ଦେବସ୍ୱକୁ କଲେ ନିଜସ୍ୱ ସମ୍ପତ୍ତି
ବିନାଶ-କାଳ ହେବାରୁ ।୪।

ଢାଅଁଙ୍କର ସେବା କରିବା ନିମନ୍ତ
ଜାଗିର ନିଷ୍କର ଭୂମି,
ବଂଶାନୁକ୍ରମରେ ଭୋଗ କରି ଶେଷେ
ଅନ୍ୟକୁ ବିକିଲେ ଜମି ।୫।

ବଳଶାଳୀ ବଳେ ଜବର ଦଖଲେ
ରଖିଲେ ଢାଅଁଙ୍କ ସ୍ଥାନ,
ଘଟିଲା ଅନର୍ଥ ପାପର ପ୍ରଭାବେ
ଛଳବଳେ ନେଲେ ଧନ ।୬।

ମନ୍ଦିରର ମାନ୍ତି ବିଭ୍ରାଟ କରିଲେ
ସେବାପୂଜା କରି ହେଲା,
ଯାଆଁଙ୍କୁ ପଥର ଭାବିବାରୁ ମନେ
ଅବଶ୍ୟ ବୁଡ଼ିଲା ଭେଳା । ୭ ।

ଯେତେ ବା ଘୋଡ଼ାଇ ରଖିଲେ ସେ ପାପ
ଫୁଟି ବାହାରଇ ବେଳେ,
ଦେବସ୍ୱ ନିଜସ୍ୱ ହୁଏନି କଦାପି
ସର୍ବସ୍ୱ ଚେଷ୍ଟାର ଫଳେ । ୮ ।

ଆସ୍ଥାନରେ ବସି ସବୁ ସେ ଦେଖନ୍ତି
କହନ୍ତିନି କା'ରେ କିଛି,
ଯା'ମନ ଯେପରି ତା' ପାଇଁ ସେପରି
ଫଳ ରଖିଥାନ୍ତି ବାଛି । ୯ ।

ପ୍ରବଳ ପ୍ରତାପୀ କଂସ ଜରାସନ୍ଧ
ଆବର ସେ ଦଶାନନ,
ଗୋଟିକୁ କୋଟିଏ ସରି କେ ନୋହିବେ
କିନ୍ତୁ ସେ ହେଲେ ନିଧନ । ୧୦ ।

ପ୍ରଭୁପଦେ ଯିଏ ଶରଣ ପଶିଛି
ବୈକୁଣ୍ଠେ ପାଇଛି ସ୍ଥାନ,
ଗର୍ବୀ ଗର୍ବ ଖର୍ବ କରନ୍ତି ସର୍ବଦା
ନିଜେ ପ୍ରଭୁ ନାରାୟଣ । ୧୧ ।

ବିଭିନ୍ନ ଦିଗରୁ ମନ୍ଦିର-ରାଜସ୍ୱ
କ୍ରମଶଃ ହେବାରୁ ଊଣା,
ପୂର୍ବ ଦେବମାନ୍ତି ଖର୍ଚ୍ଚ କାଟ ହେଲା
କରିବାକୁ ତା' ଭରଣା । ୧୨ ।

ଠାକୁର-ଜଙ୍ଗଲ ହେବାରୁ ନିଲାମ
ରଥକାଠ ମିଳିଲାନି,
ଏକାନ୍ତ-ଶ୍ରମରେ ନଅବର୍ଷ ଧରି
ରଥ ଆଜି ଚଳିଲାନି । ୧୩ ।

ଯାନ-ଯାତ୍ରା-ବିଧି ବିଧାନରୁ କିଛି
କ୍ରମେ ଗଲା କଟି କାଟି,
ଅର୍ଥାଭାବ ହେତୁ କେତେ ସେବାୟତ
କାର୍ଯ୍ୟରୁ ପାଇଲେ ଛୁଟି । ୧୪ ।

ଅଗ୍ନନକ ଭାବେ ନଟାର୍ଦ୍ଧେ କୌଶଳେ
ଦୁର୍ବୃତ୍ତ ଦେଉଳେ ପଶି,
ମଦନମୋହନ ଲକ୍ଷ୍ମୀଙ୍କ ବିଗ୍ରହ
ନେଇ ପଳାଇଲେ ଖସି । ୧୫ ।

ଛଣା ପିତ୍ତଳରେ ନିର୍ମିତ ବିଗ୍ରହ
ଦିଶୁଥିଲା ସୁନା ପରି,
ଚୋର ପାଇଁ ସିନା ଅମୂଲ୍ୟ ସମ୍ପଦ
ଭକତ ମରିଲେ ଝୁରି । ୧୬ ।

ଆକାର ପ୍ରକାର ଉଚ୍ଚତାରେ ତାଙ୍କ
ଅତି କମନୀୟ ଠାଣି,
ଭକ୍ତର ମନକୁ ଭକ୍ତି-ଆକର୍ଷଣେ
ଧରି ରଖିଥାଏ ଟାଣି । ୧୭ ।

ମନ୍ଦିରରେ ପଶି ଅଳଙ୍କାର ସବୁ
ନେଇଗଲେ ଚୋରଦଳ,
ସରକାରୀ-କଳେ ଚାଲିଲା ବ୍ୟବସ୍ଥା
କିନ୍ତୁ ହୋଇଲା ନିଷ୍ଫଳ । ୧୮ ।

ନାନା କାରଣରୁ ମନ୍ଦିର ନିମନ୍ତେ
ଆସିଲା ଖରାପ ବେଳ,
ଧରା ନ ପଡ଼ିଲେ ଜଣେ ହେଲେ ଚୋର
ବିତିଗଲା ବହୁ କାଳ । ୧୯ ।

ଯେଉଁ ସବୁ କ୍ଷତି ହେଲା ମନ୍ଦିରର
ସେତେ କି ଭରଣା ହେବ,
ସେତେ ଯୋଗ୍ୟ ସୁତ ଜନମି ପୁନଶ୍ଚ
ମନ୍ଦିରେ ଦିଅଁ ଆସିବ ? । ୨୦ ।

ଆଗ୍ରହ ଅଭାବୁ    କ୍ରମେ ମନ୍ଦିରର
କିଛି ଅଂଶ ଗଲା ଭାଜି,
ସେ ଭଙ୍ଗା ଅଂଶକୁ    ଦେଖିଲେ ନେତ୍ରରେ
ଆଖି ହୋଇଯାଏ ବୁଜି । ୨୧ ।

ଗୁଣ୍ଡିଚ୍ଚ-ମନ୍ଦିର    ଛାତ ଭାଙ୍ଗିରୁଜି
ତଳକୁ ପଡ଼ିଲା ଛିଡ଼ି,
ଚନ୍ଦନ ପୋଖରୀ    ପୋତି ହୋଇ କ୍ରମେ
ଦଳସବୁ ଗଲା ମାଡ଼ି । ୨୨ ।

ଝୁଲଣ ଘରର    ଛାତ ଭୁଷୁଡ଼ିଲା
ଶେଷଘର ହେଲା ଧ୍ୱଂସ,
ପାତାଳଶମ୍ଭୁଙ୍କ    ଦେଉଳ ଭାଙ୍ଗିଲା
ସରୀସୃପ କଲେ ବାସ । ୨୩ ।

ଅଭାବେ ସ୍ୱଭାବ    ନଷ୍ଟ ହେଲା ପରେ
ପଦାକୁ ପଡ଼ିଲା ଜଣା,
ଜମିଦାରଙ୍କର    ଅବହେଳା ଦେଖି
ଗ୍ରାମବାସୀ ହେଲେ ବଣା । ୨୪ ।

ଠାକୁର-ମନ୍ଦିର    ଠାକୁର ସମ୍ପତ୍ତି
ଗ୍ରାମର ହୋଇବା ପାଇଁ,
ଦେବୋତ୍ତର କମି-    ଶନଙ୍କ ନିକଟେ
ଗୁହାରି କରିଲେ ଯାଇ । ୨୫ ।

ଗ୍ରାମବାସୀଙ୍କର    ଗୁହାରି ଶ୍ରବଣେ
ସରକାର ବାହାଦୁର
ସର୍ବସାଧାରଣ    ମନ୍ଦିର ମାଲିକ
ଘୋଷଣା କଲେ ଜାହିର । ୨୬ ।

ଅଣସ୍ତରୀ ସାଲ    ଜାନୁଆରୀ ଦୁଇ
ତାରିଖରେ କମିଶନ,
ମାରଫତଦାର    ହାତରୁ ଦାୟିତ୍ୱ
ଲୋକଙ୍କୁ କଲେ ପ୍ରଦାନ । ୨୭ ।

# ଏକାଦଶ ସର୍ଗ

ପ୍ରତ୍ୟକ୍ଷ ଦାୟିତ୍ୱ    ବୃକ୍ଷା-ଶୁକ୍ଷା ପାଇଁ
ଜାରି ହେଲା ବିଜ୍ଞାପନ,
ପରିଷଦ ଗଢ଼ି    ପ୍ରଶାସକ ହେଲେ
ଏକ ପରେ ଅନ୍ୟ ଜଣ । ୧ ।

ରାଧାଶ୍ୟାମ ପଣ୍ଡା    ନେଲେ ଅବ୍ୟାହତି
ଦୀର୍ଘ ଦିନ ଦାୟିତ୍ୱରୁ,
ସ୍ୱଗୃହେ ରହିଲେ    ଉଞ୍ଜାଳ ଭୁଟାଇ
ଉଠିଯାଇ କୋଇଲ୍ଲେରୁ । ୨ ।

ଠାକୁରମନ୍ଦର    ଜମିବାଡ଼ି କାର୍ଯ୍ୟ
ମାଲିମୋକଦ୍ଦମା ନେଇ,
ଅନ୍ତିମ ସମୟେ    ରାଧାଶ୍ୟାମ ଆଉ
ବିଶ୍ରାମ ନ ଥିଲେ ପାଇ । ୩ ।

ସବୁଦିନ ପରି    ଶୋଇଲେ ରାତିରେ
ଇଷ୍ଟଦେବ ନାମ ନେଇ,
କିଏ ଜାଣିଥିଲା    ଏହି ରାତି ହେବ
କାଳରାତି ତାଙ୍କ ପାଇଁ । ୪ ।

ତହିଁ ପରଦିନ    ସମ୍ପୂର୍ଣ୍ଣ ମର୍ଯ୍ୟାଦା
ସହକାରେ ମରଦେହ,
ଅନ୍ତି ଆଡ଼ମ୍ବରେ    ଶୋଭାଯାତ୍ରା କରି
ଦୁଃଖେ କରାଗଲା ଦାହ । ୫ ।

ମର ଦେହ ତାଙ୍କ    ମିଶିଲା ମାଟିରେ
କୀର୍ତ୍ତି କଲା କାଳଜୟୀ,
ଦଧିବାମନଙ୍କ    ସେବା ପୁଣ୍ୟଫଳେ
ରହିଲେ ଅମର ହୋଇ । ୬ ।

ଆଗଭର ହୋଇ ଯୁବଗୋଷ୍ଠୀ ନେଲେ
ମନ୍ଦିର ବୁଝିବା କାର୍ଯ୍ୟ,
ନବୀନ ଉତ୍ସାହ ନବ ଉଦ୍ଦୀପନା
ମନେ ଆଣିଦେଲା ଧୈର୍ଯ୍ୟ । ୭ ।

ଗୋପୀନାଥ ରଥ ଯୁବଗୋଷ୍ଠୀ ସଙ୍ଘ
ମିଶି ନେଲେ କାର୍ଯ୍ୟଭାର,
ପ୍ରଶାସକ ଭାବେ ନିଜେ ସ୍ୱଇଚ୍ଛାରେ
ସଦସ୍ୟ କଲେ ବାହାର । ୮ ।

ତାଙ୍କ ନିର୍ଦ୍ଦେଶରେ ସବୁ କାମ ହେବ
ମାନିଲେ ଯୁବକଦଳ,
ଦ୍ୱିଗୁଣ ଉତ୍ସାହେ ମିଶି କାମ କଲେ
ଫେରିବ ଅତୀତ ବେଳ । ୯ ।

ବାଲ୍ୟକାଳୁ ଦଧି- ବାମନଙ୍କ ପଦେ
ଗୋପୀନାଥଙ୍କର ଧ୍ୟାନ,
ଜୀବନକୁ ପଣ କଲେ ଠାକୁରଙ୍କ
ସେବା ପାଇଁ ଚନ୍ଦନ । ୧୦ ।

ଠାକୁରଙ୍କ କାର୍ଯ୍ୟ ତୁଲାଇବା ଯୋଗୁଁ
କାହାର ଅପ୍ରିୟ ହେଲେ,
ପୁଣି କେତେ ସ୍ଥାନେ ସମ୍ମାନ ପାଇ
ପ୍ରିୟଭାଜନ ହୋଇଲେ । ୧୧ ।

ଆସୁ ଯେତେ ବାଧା ବିଘ୍ନ ଚଲାପଥେ
କରିଥା'ନ୍ତି ସାଧୁ କର୍ମ ;
ସାହା-ପକ୍ଷ ହୋଇ ସବୁ ସ୍ଥଳେ ତାଙ୍କୁ
ରକ୍ଷା କରିଥାଏ ଧର୍ମ । ୧୨ ।

ଅଦମ୍ୟ ଚେଷ୍ଟାରେ ମରାମତି କାର୍ଯ୍ୟ
ହେଲା ଧୀରେ ମନ୍ଦିରର,
ମାଗି ଚନ୍ଦା-ଭେଦା ମନ୍ଦିର ଉନ୍ନତି
ହୋଇଲା ଉତ୍ତରୋତ୍ତର । ୧୩ ।

ହର୍ଷ-ପୁଷ୍କରଣୀ ନିଲାମ ଅର୍ଥରେ
ବନ୍ଧୁର ଯୋଜନା କର,
ଯାନ-ଯାତ୍ରା-ଖର୍ଚ୍ଚ ଭରଣା କରିଲେ
ସବୁ ହେଲା ପୂର୍ବପର । ୧୪ ।

ଅର୍ଦ୍ଧ ନଅ ବର୍ଷ ସ୍ଥଗିତ ଥିବା ସେ
ରଥଯାତ୍ରା ଆରମ୍ଭିଲେ,
ପୂର୍ବ ପ୍ରଚଳିତ ଦେବସୀନ୍ତମାନ
ପୁଣି କ୍ରମେ ଖୋଲୁ କଲେ । ୧୫ ।

ସରକାରୀ ଅନୁ- ଦାନ ଯାହା ମିଳେ
ସଞ୍ଚିତ ହୋଇ ତା' ରହେ,
ଠାକୁରଙ୍କ ଉପ- କରଣ କ୍ରୟରେ
ସେହି ଅର୍ଥ ବ୍ୟୟ ହୁଏ । ୧୬ ।

ନାନା ପରକାରେ ଅର୍ଥର ସାହାଯ୍ୟ
ଦେଲେ ଯେଣୁ ସରକାର,
ସର୍ବାଙ୍ଗସୁନ୍ଦର ଦେବାଳୟ ପାଇଁ
ଯୋଜନା ହୋଇଲା ସ୍ଥିର । ୧୭ ।

ଗାଉଁଙ୍କର ଜମି ଦଖଲକୁ ଆସି
ମନ୍ଦିର-ହାତେ ରହିଲା,
ସେବାପୂଜା-କାର୍ଯ୍ୟେ ଅବହେଳା ଦେଖି
ପାଳିଆ ନିଯୁକ୍ତ ହେଲା । ୧୮ ।

ପୂର୍ବ.ଗୀତ-କାନ୍ତ ଯାନ-ଯାତ୍ରା ଫଳେ
ଭକ୍ତମାନେ ନିତି ଆସି
ନିଜ ମନସ୍କାମ ପୂରଣ ହେବାରୁ
ଧନ ଦେଲେ ହୋଇ ଖୁସି । ୧୯ ।

ଗୋପୀନାଥଙ୍କର ଉଦ୍ୟମେ ନୂତନ
ଝୁଲଣ-ମଣ୍ଡପ ହେଲା
ଚନ୍ଦନ-ପୋଖରୀ- ପଙ୍କୋଦ୍ଧାର ହୋଇ
ଭଉଁରୀ-ଯାତ ଖୋଲିଲା । ୨୦ ।

ଦୋଳମଣ୍ଡପଟି ନୂଆ ରୂପ ନେଇ
ଦିଶିଲା ଅତି ସୁନ୍ଦର,
ଗୁଣ୍ଡିଚ୍ଚ-ମନ୍ଦିର ମରାମତି ଫଳେ
ହେଲା ଅତି ମନୋହର । ୨୧ ।

ଚୋର ଯାଇଥିବା ମଦନ ମୋହନ,
ଲକ୍ଷ୍ମୀଙ୍କୁ ପ୍ରତିଷ୍ଠା କରି,
ଅତି ପୁଣ୍ୟ କର୍ମ କରି ସଭିଙ୍କର
ହୃଦୟ ନେଲେଟି ହରି । ୨୨ ।

ବହୁ ସାଧୁ, ସନ୍ଥ ସାଦରେ ଅଣାଇ
କରି ଯଜ୍ଞ ଆୟୋଜନ,
ଦିବ୍ୟସିଂହ ଦେବ ପୂର୍ଣ୍ଣାହୁତି ଦାନେ
ଯଜ୍ଞ ହେଲା ସମାପନ । ୨୩ ।

ଏହି ସମୟରେ ଶ୍ରେଷ୍ଠ ବ୍ୟକ୍ତିଗଣ
ଜୀଉଙ୍କ ଦର୍ଶନେ ଆସି,
କମନୀୟ କାନ୍ତି ଦେଖି ନିଜ ନେତ୍ରେ
ଥିଲେ ବହୁ ପ୍ରଶଂସି । ୨୪ ।

ଉପରାଷ୍ଟ୍ରପତି ମାନ୍ୟବର ଜତ୍ତି
ମନ୍ଦିରକୁ ଥରେ ଆସି,
ଜୀଉଙ୍କ ମୂରତି ଦରଶନ କରି
ହେଲେ ଅତିଶୟ ଖୁସି । ୨୫ ।

ମନ୍ଦିରର ଯେତେ ଭଙ୍ଗାରୁଜା ଅଂଶ
ବୁଲି ବୁଲି ସବୁ ଦେଖି,
ପୁନର୍ନିର୍ମାଣର ନିମନ୍ତେ ତୁରନ୍ତ
ସରକାରେ ଥିଲେ ଲେଖି । ୨୬ ।

ତାଙ୍କ ଲେଖା-ବଳେ ସରକାରୀ-କରୁ
ମିଳି ବହୁ ଅନୁଦାନ,
ମନ୍ଦିରରେ ଥିବା ଭଙ୍ଗା ଅଂଶମାନ
କ୍ରମଶଃ ହେଲା ନିର୍ମାଣ । ୨୭ ।

ଏବେ ପ୍ରତ୍ନତତ୍ତ୍ୱ ବିଭାଗର ପୁଣି
ଶୁଭ ଦୃଷ୍ଟି ମନ୍ଦିରରେ,
ପଡ଼ିବାରୁ ଜୀର୍ଣ୍ଣ ଅଂଶର ଉଦ୍ଧାର
ଚାଲିଛି ଅତି ଯତ୍ନରେ ।୨୮।

ପୁଣ୍ୟ ଦେବାଳୟ ପୂତ ତୀର୍ଥସ୍ଥାନ
ଉଦ୍ଧାର କରେ ଯେ ଜନ,
ମର ସଂସାରରେ ଧନ୍ୟ ତା' ଜୀବନ
ବଇକୁଣ୍ଠେ ପାଏ ସ୍ଥାନ ।୨୯।

ଶ୍ରୀଦଧିବାମନ ଗୋପୀନାଥଙ୍କର
ଆୟୁଷ କର ବର୍ଦ୍ଧନ,
ଧନ, ଦାର, ସୁତ, ଯଶ, ପଉରୁଷ
କରନ୍ତୁ ସଦା ପ୍ରଦାନ ।୩୦।

ଅସୁରେଶ୍ୱରର ଇଷ୍ଟଦେବ ରୂପେ
ଶ୍ରୀଜୀଉ ଦଧିବାମନ,
ଜଗତକୁ ସୁଖ ଦେଇ ସଭିଙ୍କର
ଆରତ କର ଖଣ୍ଡନ ।୩୧।

ନୁହେଁ ମୁହିଁ କବି, ଭାବୁକ, ଲେଖକ
ବୃତ୍ତି ମୋର ଶିକ୍ଷାଦାନ,
ମୁଁ ହୀନ ଅଜ୍ଞାନ ନାହିଁ ଭାଷାଜ୍ଞାନ
ରଚିବାକୁ ପଦମାନ ।୩୨।

ଯେଉଁ କୃପା-ବଳେ ବାନ୍ଧିଛି ସାହସ
ଏ କାବ୍ୟ ରଚିବା ପାଇଁ,
ନିଜସ୍ୱ ସମ୍ବଳ ନୁହେଁ ମୋର ସବୁ
ବନ୍ଧୁ-କୃପା ଅଛି ରହି ।୩୩।

ଶୁଣିଅଛି କିଛି ଗୁରୁଜନ-ମୁଖୁ
ବାଲ୍ୟକାଳେ ଆଗ୍ରହରେ,
ଆଉ ଯାହା କିଛି ପ୍ରଚୁର ହୋଇଛି
କିମ୍ବଦନ୍ତୀ ଆକାରରେ ।୩୪।

ସବୁ ପରିସରୁ ନେଇ କିଛି ତଥ୍ୟ
ଏଥିରେ କଲି ପ୍ରକାଶ,
ବିବୁଧେ ! ମୋହର ବିବିଧ ତ୍ରୁଟିର
କ୍ଷମିବେଟି ଦୋଷାଦୋଷ ।୩୫।

ଶୟନେ ସ୍ୱପନେ ଅବା ଜାଗରଣେ
ସ୍ମରି ମୁଁ ବିଧିବାମନ,
ତାଙ୍କର ଆଶିଷେ କଲି ମୁଁ ପ୍ରୟାସ
ରଚିବାକୁ ପଦମାନ ।୩୬।

ଦକ୍ଷତା-ବିହୀନ ମୁହିଁ କ୍ଷୁଦ୍ର କବି
କି ବର୍ଣ୍ଣିବି ତବ ଗୁଣ,
ମୋ ହୃଦ-କନ୍ଦରେ ବିଜେ କଲେ ପ୍ରଭେ !
ସାର୍ଥକ ହେବ ଜୀବନ ।୩୭।

ଅହେ ଚକାଡୋଳା ! ଦେଖି ତବ ଲୀଳା
ବିତିଯାଉ ମୋର ଦିନ,
ସୁଖେ ଦୁଃଖେ ନାଚୁ ତୋ' ରୂପ ନୟନେ
ଗୁହାରି କରେ 'ମଦନ' ।୩୮।

---

# ବିଶେଷ ସୂଚନା

ଶାମ—ଶ୍ୟାମସୁନ୍ଦର ବେହେରା, ଘର—କୋଇଲୋ ଗ୍ରାମର ଗୁଣ୍ଡିଚା-ମନ୍ଦିର ରଥଦାଣ୍ଡ ଉପକଣ୍ଠରେ । ସେ ଅରୁଣସ୍ତମ୍ଭ ସ୍ଥାପନକାରୀ ।

ସପ୍ତ ଜମିଦାର—ପୂର୍ବ କାଳରେ କନିକା-ଜମିଦାରଙ୍କ ଅଧୀନରେ ଥିବା ଜମିଦାରମାନଙ୍କ ମଧ୍ୟରୁ ନିର୍ଦ୍ଦିଷ୍ଟ ୭ ଜଣ ଜମିଦାର; ଯେଉଁମାନେ କି, ଦଧିବାମନଜୀଉଙ୍କ ମନ୍ଦିର ଓ ଦିଅଁଙ୍କର ମଠ ତଥା ଯାନିଯାତ୍ରାମାନ ଯଥାରୀତି ତୁଲାଉଥିଲେ ।

ସପ୍ତ ଜମିଦାରୀ—(୧) କୃଷ୍ଣପୁର, (୨) ବିଷ୍ଣୁପୁର, (୩) ବାମନପୁର, (୪) ଅଚ୍ୟୁତପୁର, (୫) ଗୋବିନ୍ଦପୁର, (୬) ଗୋପାଳପୁର, (୭) ଚନ୍ଦୋଡ଼ା ।

ଜୟକାଳୀ ଯାତ୍ରାଦଳ—ଶ୍ରୀରାଧାମାଧବ ବାନାର୍ଜୀଙ୍କ ପ୍ରଥମ ପୁତ୍ର ଶ୍ରୀ ରାମଗୋପାଳ ବାନାର୍ଜୀଙ୍କ ପତ୍ନୀ 'ଜୟକାଳୀ'ଙ୍କର ନାମାନୁସାରେ ଗଢ଼ାଯାଇଥିବା ଯାତ୍ରାଦଳ । (ଅସୁରେଶ୍ୱର ରାଧାଶ୍ୟାମ ପଣ୍ଡା, ଭୁବନେଶ୍ୱର ନିକଟସ୍ଥ ସୁନ୍ଦରପଦା ଗ୍ରାମର କାହ୍ନୁ ନନ୍ଦ ଓ ଅନ୍ୟମାନଙ୍କୁ ନେଇ ବଙ୍ଗପ୍ରଦେଶରେ ଏହା ଗଢ଼ାଯାଇଥିଲା)

ସି. ଜି. ନାପୁର—ତଦାନୀନ୍ତନ ଇଷ୍ଟଇଣ୍ଡିଆ କମ୍ପାନୀର ବିଖ୍ୟାତ କମିଶନର ସେ କି ତା ୫ । ୩ । ୧୯୪୩ ମସିହାରେ ଓଡ଼ିଶାର (ଅସୁରେଶ୍ୱର) ଶ୍ରୀଦଧିବାମନଜୀଉଙ୍କ ମନ୍ଦିର ସର୍ବସାଧାରଣଙ୍କର ବୋଲି ବଙ୍ଗଳାରେ ସାଧାରଣ ଘୋଷଣାପତ୍ର ଜାରି କରିଥିଲେ ।

୭୬ବାଟୀ ଭୂସମ୍ପତ୍ତି—ଶ୍ରୀ ଶ୍ରୀ ଦଧିବାମନଜୀଉଙ୍କର ୭୬ ବାଟୀ ଭୂସମ୍ପତ୍ତି ଥିଲା । ୧୨୦୭ ରମଜାନରେ ଶ୍ରୀ ରାମଚନ୍ଦ୍ର ମଦନରାଏ ଜମିଦାର ଦେବୋତ୍ତର ସନନ୍ଦ ପ୍ରତିପାଦନ କରି ପରିଚ୍ଛା ଶ୍ରୀ ହଳଧର ମିଶ୍ରଙ୍କୁ ୫୩ବାଟୀ ଭୂସମ୍ପତ୍ତି ଶ୍ରୀଜୀଉଙ୍କ ମନ୍ଦିର ଉଦ୍ଦେଶ୍ୟରେ

ଦାନ କରିଥିଲେ । ଏହା ଛଡ଼ା ରାଇବଲ ଓ ସମପଡ଼ା ଜମିଦାରୀରେ ୪୭୫ ଏକର ଜମି ପୂର୍ବରୁ ଠାକୁରଙ୍କର ଥିଲା । (୪୭୫ ଏକର (ମାଣ) = ୨୩.୭୫ ବାଟୀ, ମୋଟ୍ ୭୬ ବାଟୀ)

ଅସୁରେଶ୍ୱର—କଟକ ଜିଲ୍ଲାର ସାଲେପୁର ଥାନା ଅନ୍ତର୍ଗତ ଲୁଣାନଦୀର ଦକ୍ଷିଣତୀରରେ ଶ୍ରୀ ହରଚଣ୍ଡୀ ଦେବୀପୀଠର ପରିସରରେ ଥିବା ଶ୍ରୀ ଅସୁରେଶ୍ୱର ମହାଦେବଙ୍କ ନାମାନୁସାରେ ନାମିତ ସ୍ଥାନ (ପ୍ରଗଣା) ବିଶେଷ । ଏହାର ପରିସୀମା ଅଷ୍ଟକ୍ରୋଶ ବ୍ୟାପ୍ତ । ଏଥିରେ ଥିବା ୧୨ଟି ଗ୍ରାମର ଶେଷରେ 'ପଡ଼ା' ଓ ୧୩ଟି ଗ୍ରାମର ଶେଷରେ 'ଲୋ' ଯୁକ୍ତ ହୋଇଛି । କଟକ—ଚନ୍ଦବାଲି ରାଜପଥରେ କଟକଠାରୁ ୪୫ କିଲୋମିଟର ଦୂରରେ ଅସୁରେଶ୍ୱର ଅବସ୍ଥିତ । ଏହି ଛକଠାରୁ ମାତ୍ର ୩ କିଲୋମିଟର ପରେ ଶ୍ରୀଶ୍ରୀଦଧିବାମନଜୀଉଙ୍କ ମନ୍ଦିର ରହିଛି ।

ହଅଁପୋଖରୀ—'ହେ ପୋଖରୀ' ନାମରେ ପରିଚିତ କଟକ—ଚନ୍ଦବାଲି ରାଜପଥର ଉପକଣ୍ଠରେ ଥିବା ପୁଷ୍କରିଣୀ ସୁକରପଡ଼ା ପଞ୍ଚାୟତରେ ଅବସ୍ଥିତ ।

ସୁକରପଡ଼ା—ବ୍ୟାଧିଗ୍ରସ୍ତ ଗାଈଜଗୁଆଳ ସୁକରରେ ସ୍ପର୍ଶ କରିଥିବା ଶାଳଗ୍ରାମଙ୍କ ମହିମାରୁ ବ୍ୟାଧିମୁକ୍ତ ହୋଇଥିଲା । ସେହି ଭଗବାନ ଈଶ୍ୱରଙ୍କ କରୁଣାପ୍ରାପ୍ତ ପୁରୁଷର ନିବାସ ସ୍ଥଳ କାଳକ୍ରମେ ତା'ର 'ସୁକର'ର ପ୍ରାଧାନ୍ୟ ଭିତ୍ତିରେ ଅପଭ୍ରଷ୍ଟ ହୋଇ 'ସୁକରପଡ଼ା' ନାମରେ ନାମିତ ହୋଇଛି ।

ମଧୁବନ—ସୁକରପଡ଼ା ଓ ଅସୁରେଶ୍ୱରର ମଧ୍ୟବର୍ତ୍ତୀ ସ୍ଥାନ ।

ମଧୁସାଗର—ଅତୀତରେ ଲୁଣାନଦୀର ବନ୍ୟାରେ ସୃଷ୍ଟ ବିସ୍ତୀର୍ଣ୍ଣ ଜଳଭାଗ । ନିଶ୍ଚିନ୍ତକୋଇଲି, ସୁକରପଡ଼ା ଆଦି ଅଞ୍ଚଳକୁ ନେଇ ଏହା ପରିବ୍ୟାପ୍ତ ଥିଲା । କାଳକ୍ରମେ ଏହା ବିଲୁପ୍ତ ହୋଇ ଏବେ କଣ୍ଡିଆରୁପରେ ସ୍ଥାନେ ସ୍ଥାନେ ଦୃଷ୍ଟିଗୋଚର ହେଉଅଛି ।

ଭଙ୍ଗାଦେଉଳ—ନିଶ୍ଚିନ୍ତକୋଇଲି ନିକଟବର୍ତ୍ତୀ ମୌଜା ଝାଡ଼େଶ୍ୱରପୁର ପାଣ୍ଡିଆ ଗ୍ରାମରେ ଅଶ୍ୱତରେ ଥିବା ଶ୍ରୀଜୀଉଙ୍କ ମନ୍ଦିରର ଭଗ୍ନାବଶେଷ ।

ବଡ଼ପୋଖରୀ—ନିଶ୍ଚିନ୍ତକୋଇଲି ବ୍ଲକ୍ ଅନ୍ତର୍ଗତ ଗୋପାଳପୁର ଗ୍ରାମର ଶ୍ରୀ ବୀରଭଦ୍ରେଶ୍ୱର ମନ୍ଦିର ନିକଟବର୍ତ୍ତୀ ସୁବୃହତ୍ ପୁଷ୍କରିଣୀ ।

ଅରଣ୍ୟର ପୂର୍ବ ଅଂଶ—ଅସୁରେଶ୍ୱର ପଞ୍ଚାୟତସ୍ଥିତ ବର୍ତ୍ତମାନର 'ଟୂଙ୍ଗ' ନାମରେ ପରିଚିତ ଗ୍ରାମ ।

ଶ୍ରୀ ଶ୍ରୀ ଦଧିବାମନଜୀଉଙ୍କ ମନ୍ଦିର ପରିଚାଳନା ଦାୟିତ୍ୱରେ କାଳକ୍ରମେ ଥିବା ବଙ୍ଗୀୟ ଜମିଦାରଙ୍କ ବଂଶାବଳୀ — ରାଧାମାଧବ ବାନାର୍ଜୀ ଓ ତାଙ୍କର ଦ୍ୱିତୀୟ ପୁତ୍ର ଶିବକୃଷ୍ଣ ୧୮୧୭ ରୁ ୧୮୭୩ ପର୍ଯ୍ୟନ୍ତ ଜମିଦାର ଥିଲେ । ଶିବକୃଷ୍ଣଙ୍କ ଅନ୍ତେ ତାଙ୍କ ପତ୍ନୀ ଅନ୍ନପୂର୍ଣ୍ଣା ଦେବୀ ୧୮୭୩ ରୁ ୧୯୦୮ ପର୍ଯ୍ୟନ୍ତ ଜମିଦାରୀ ଚଳାଇଥିଲେ । ୧୯୦୮ ରୁ ୧୯୧୫ ପର୍ଯ୍ୟନ୍ତ ଅନ୍ନପୂର୍ଣ୍ଣା ଦେବୀଙ୍କ ପୋଷ୍ୟପୁତ୍ର ମନମୋହନ ବାନାର୍ଜୀ ଜମିଦାର ହେଲେ । ତାଙ୍କ ଅନ୍ତେ ପୁତ୍ର ଶରତଚନ୍ଦ୍ର ବାନାର୍ଜୀ ନା'ବାଳକ ଥିବାରୁ ମନମୋହନଙ୍କ ପତ୍ନୀ ପ୍ରଭାବତୀ ଦେବୀ ଜମିଦାରୀ ଚଳାଇଥିଲେ । ଶରତଚନ୍ଦ୍ର ସାବାଳକ ହେବା ପରେ ୧୯୩୦ ପର୍ଯ୍ୟନ୍ତ ଦାୟିତ୍ୱ ନେଇଥିଲେ । ତାଙ୍କ ପରେ ତାଙ୍କ ପତ୍ନୀ ପ୍ରମୋଦା ଦେବୀ ୧୯୩୧ରୁ ଦାୟିତ୍ୱ ବହନ କରିଥିଲେ । ସେତେବେଳେ ସେ (ପ୍ରମୋଦା ଦେବୀ) ରାଧାଶ୍ୟାମ ପଣ୍ଡାଙ୍କୁ ଇଜାରାଦାର ରୂପେ ନିଯୁକ୍ତି ଦେଇଥିଲେ । ୧୯୩୭ରେ ପ୍ରମୋଦା ଦେବୀଙ୍କ ଅନ୍ତେ ତାଙ୍କ ଶାଶୁ ପ୍ରଭାବତୀ ଦେବୀ ରଜତକାନ୍ତ ବାନାର୍ଜୀଙ୍କୁ ପୋଷ୍ୟପୁତ୍ର ଭାବରେ ଗ୍ରହଣ କରି ଦାୟିତ୍ୱ ଦେଇଥିଲେ । ରଜତକାନ୍ତଙ୍କ ପରାମର୍ଶକ୍ରମେ ପ୍ରଭାବତୀ ଦେବୀ ସେହି ୧୯୩୭ ମସିହାରେ ଶ୍ରୀ ରାଧାଶ୍ୟାମ ପଣ୍ଡାଙ୍କୁ ଶ୍ରୀ ଦଧିବାମନ ଜୀଉଙ୍କ ମନ୍ଦିର ଓ ତାଙ୍କ ଭୂସମ୍ପତ୍ତିର ଦାୟିତ୍ୱ ବୁଝିବା ପାଇଁ ମାର୍ଫତଦାର ରୂପେ ନିଯୁକ୍ତ କରିଥିଲେ । ପଣ୍ଡାଙ୍କର କାର୍ଯ୍ୟକାଳ

୧୯୩୭ରୁ ୧୯୬୯ ପର୍ଯ୍ୟନ୍ତ ବଳବତ୍ତର ଥିଲା । ତା ୨ । ୧ । ୬୯ ରିଖଠାରୁ ଓଡ଼ିଶା ଦେବୋତ୍ତର ବିଭାଗ ମନ୍ଦିର ଦାୟିତ୍ୱ ହାତକୁ ନେଇ ଟ୍ରଷ୍ଟବୋର୍ଡ୍ ଗଠନ କଲେ । ଟ୍ରଷ୍ଟି ଶ୍ରୀ ଗୋପିନାଥ ରଥଙ୍କ ତତ୍ତ୍ୱାବଧାନରେ ଶ୍ରୀଜୀଉଙ୍କ ମନ୍ଦିର ପରିଚାଳନା ଅଦ୍ୟାବଧି ଚାଲିଅଛି ।

ଅଷ୍ଟ ମହାଶମ୍ଭୁ—ଅସୁରେଶ୍ୱର ପ୍ରଗଣାର ସୀମା ନିମ୍ନୋକ୍ତ ଅଷ୍ଟ ମହାଶମ୍ଭୁଙ୍କ ଅବସ୍ଥିତି ଦ୍ୱାରା ସୂଚିତ ହୁଏ ।

(୧) ଅସୁରେଶ୍ୱର, (୨) କପିଳେଶ୍ୱର, (୩) ଜଟେଶ୍ୱର, (୪) ବଲେଶ୍ୱର, (୫) ଗ୍ରାମେଶ୍ୱର, (୬) ମଲ୍ଲିକେଶ୍ୱର, (୭) ଖାରଭଦ୍ରେଶ୍ୱର, (୮) କ୍ଷୀରେଶ୍ୱର ।

ପୁଣ୍ୟ କ୍ଷେତ୍ର—

୧—ଶଙ୍ଖକ୍ଷେତ୍ର—ଶ୍ରୀକ୍ଷେତ୍ର, ପୁରୁଷୋତ୍ତମ କ୍ଷେତ୍ର ବା ପୁରୀ ।
୨—ଚକ୍ରକ୍ଷେତ୍ର—ଅର୍କକ୍ଷେତ୍ର ବା କୋଣାର୍କ ।
୩—ଗଦାକ୍ଷେତ୍ର—ଏକାମ୍ରକ୍ଷେତ୍ର, ଭୁବନେଶ୍ୱର (ଲିଙ୍ଗରାଜ ମନ୍ଦିର ଆଦି ଶିବମନ୍ଦିରମାନଙ୍କର ଲୀଳାସ୍ଥଳୀ)
୪—ପଦ୍ମକ୍ଷେତ୍ର—ଶକ୍ତିକ୍ଷେତ୍ର ବା ବିରଜାକ୍ଷେତ୍ର, ଯାଜପୁର ।
୫—ଚାଣପତ୍ୟକ୍ଷେତ୍ର—ମହାବିନାୟକପୀଠ, କଟକ ।
୬—ତୁଳସୀକ୍ଷେତ୍ର—ବ୍ରହ୍ମକ୍ଷେତ୍ର ବା ଗୁପ୍ତକ୍ଷେତ୍ର, କେନ୍ଦ୍ରାପଡ଼ା ।

ବି. ଦ୍ର.—ଏହି ପୁସ୍ତକର ଷଷ୍ଠ ସର୍ଗର ଅଷ୍ଟମ ପାଦରେ ଥିବା ୧୨୦୦ (ବାରଶହ) ସାଲ ବ୍ୟତୀତ ଅନ୍ୟତ୍ର ବ୍ୟବହୃତ ହୋଇଥିବା ସମସ୍ତ ସାଲକୁ ଖ୍ରୀଷ୍ଟାବ୍ଦ ବୋଲି ବୁଝିବାକୁ ଅନୁରୋଧ । (୧୨୦୦ସାଲ=୧୭୯୩ ଖ୍ରୀଷ୍ଟାବ୍ଦ) ।

---

# ଶୁଦ୍ଧିପତ୍ର

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୩ | ୨୧ | ସର୍ବବ୍ୟାପି | ସର୍ବବ୍ୟାପୀ |
| ୧୭ | ୨୮ | ପର-ପ୍ରତ୍ୟୁଷର | ପରପ୍ରତ୍ୟୁଷରେ |
| ୧୮ | ୧୩ | ଗଉଡ଼ଣୀ | ଗଉଡ଼ୁଣୀ |
| ୩୦ | ୪ | ଡାଳ | ଭର |
| ୩୪ | ୨୧ | ଅଶ୍ୱିନ | ଆଶ୍ୱିନ |
| ୩୫ | ୧୩ | ବୃନ୍ଦାବଚ-ପାଶେ | ବୃନ୍ଦାବଣ-ପାଶେ |
| ୩୭ | ୨୩ | ଶୃଣି | ଶୁଣି |
| ୩୯ | ୨୦ | ରାଜଙ୍କୁ | ରାଜାଙ୍କୁ |
| ୪୦ | ୯ | ଦମିଦାରଙ୍କର | ଜମିଦାରଙ୍କର |
| ୪୩ | ୧୫ | ଅଦ୍ୟପି | ଅଦ୍ୟାପି |
| ୪୫ | ୮ | କହିଁ | କାହିଁ |
| ୫୪ | ୨୦ | ଝସି | ଖୁସି |
| ୫୬ | ୧୩ | ଅଦ୍ୱେ | ଆଦ୍ୱେ |
| ୫୭ | ୭ | ବାମନପୁର | ବାବନପୁର |
| ୫୮ | ୧୮ | ଭଗବାନ | ଭାଗ୍ୟବାନ |
| ୬୦ | ୩ | ଗୋପିନାଥ | ଗୋପୀନାଥ |

---